# କର୍ପୂରମଞ୍ଜରୀ

ରଚୟିତା—ମହାକବି ରାଜଶେଖର

ଆଲୋଚନାମୂଳକ ମୁଖବନ୍ଧ ଏବଂ ଆବଶ୍ୟକ
ଟୀକାଟିପ୍ପଣୀ ସମ୍ବଳିତ ଓଡ଼ିଆ ଅନୁବାଦ

ଅନୁବାଦ—ପଣ୍ଡିତ ଶ୍ରୀ ଧନେଶ୍ୱର ମହାପାତ୍ର
ଏମ୍. ଏ., ବି. ଇଡ୍., ସାହିତ୍ୟାଚାର୍ଯ୍ୟ, ବିଷ୍ଣୁଭୂଷଣ କୋବିଦ ।

# ॥ କର୍ପୂରମଞ୍ଜରୀ ॥

*

ଅନୁବାଦକ

**ଧନେଶ୍ୱର ମହାପାତ୍ର**

*

ପ୍ରକାଶକ

**ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ**

ବିନୋଦବିହାରୀ, କଟକ-୨

*

ପ୍ରଥମ ପ୍ରକାଶ

**ଦଶହରା—୧୯୭୩**

*

ମୂଲ୍ୟ

**ଦୁଇଟଙ୍କା ମାତ୍ର**

ମୁଦ୍ରାକର—

ସଞ୍ଜରେଖା ପ୍ରେସ୍

କଟକ-୧

# ନିଜ କଥା

ଓଡ଼ିଆ, ବଙ୍ଗଳା, ହିନ୍ଦୀ ଆଦି ଆଧୁନିକ ଭାରତୀୟ ଆର୍ଯ୍ୟଭାଷା-ଗୁଡ଼ିକର ଉତ୍ପତ୍ତି, ବିକାଶକ୍ରମ, ମୌଳିକତା ପ୍ରଭୃତି ଜାଣିବାକୁ ହେଲେ ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାର ଅନୁଶୀଳନ ଅପରିହାର୍ଯ୍ୟ । ଏହି ଦୃଷ୍ଟିରୁ କର୍ପୂରମଞ୍ଜରୀ ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ । କାରଣ ଉକ୍ତ ଦୃଶ୍ୟକାବ୍ୟଟି ଆଦ୍ୟପ୍ରାନ୍ତ ପ୍ରାକୃତ ଭାଷାରେ ରଚିତ । କେବଳ ଭାଷା ଦୃଷ୍ଟିରୁ ନୁହେଁ, ଅତୀତ ଭାରତର ଋଦ୍ଧିମନ୍ତ ରସଧର୍ମୀ ସାହିତ୍ୟର ମଧ୍ୟ ଏହା ଏକ ଉତ୍କୃଷ୍ଟ ନିଦର୍ଶନ ।

ଦୁଇଗୋଟି ଉଦ୍ଦେଶ୍ୟ ନେଇ ମୁଁ ଓଡ଼ିଆରେ ଏହାର ସମ୍ପାଦନା କରିଅଛି । ପ୍ରଥମଟି ହେଉଛି—ଅତୀତର ସମୃଦ୍ଧ ସାହିତ୍ୟରୁ କିୟଦଂଶ ସରଳ ଓଡ଼ିଆ ଭାଷାରେ ଲୋକଲୋଚନକୁ ଆଣିବା ଏବଂ ଦ୍ୱିତୀୟଟି ହେଉଛି—ଶିକ୍ଷାର୍ଥୀମାନଙ୍କୁ ସାହାଯ୍ୟ କରିବା । କର୍ପୂରମଞ୍ଜରୀ ଓଡ଼ିଆ ତଥା ସଂସ୍କୃତ ଏମ୍.ଏ. ପରୀକ୍ଷାର ପାଠ୍ୟ-କ୍ରମର ଅନ୍ତର୍ଗତ । ପ୍ରାକୃତ ଭାଷାରେ ଲିଖିତ ହୋଇଥିବାରୁ ଏହା ପରୀକ୍ଷାର୍ଥୀମାନଙ୍କୁ ବିଶେଷତଃ ଓଡ଼ିଆ ପରୀକ୍ଷାର୍ଥୀମାନଙ୍କୁ ଅତ୍ୟନ୍ତ ଜଟିଳ ବୋଧ ହୋଇଥାଏ । ଏହି ଦୁଇଟି ଉଦ୍ଦେଶ୍ୟ ରଖିଥିବା ଯୋଗୁଁ ମୂଳ ରଚନାର ଅବିକଳ ଅନୁବାଦ କରିବା ଦିଗରେ ଏବଂ ଅନୁବାଦ ସୁଖପାଠ୍ୟ ହେବା ଦିଗରେ ମୁଁ ଯଥାସମ୍ଭବ ଦୃଷ୍ଟି ଦେଇଅଛି ।

ଉଭୟ ଉଦ୍ଦେଶ୍ୟ ଯଦି କଥଞ୍ଚିତ୍‌ପରିମାଣରେ ସାଧିତ ହୁଏ, ତେବେ ମୋର ଶ୍ରମ ସଫଳ ହେଲା ବୋଲି ମନେ କରିବି ।

ରେଭେନ୍ସା କଲେଜର ଓଡ଼ିଆ ଏବଂ ସଂସ୍କୃତ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର ଶ୍ରୀଯୁକ୍ତ କୁଞ୍ଜବିହାରୀ ତ୍ରିପାଠୀ ଏମ୍. ଏ. ଡି. ଏଲ୍. ମହୋଦୟ ଏହି ପୁସ୍ତକର ପାଣ୍ଡୁଲିପି ପାଠ କରି ନିଜର ଅଭିମତ ଦାନ କରିଛନ୍ତି । ତାଙ୍କଠାରୁ ମୂଲ୍ୟବାନ ପରାମର୍ଶ ପାଇଥିବାରୁ ମୁଁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି । ଇତି ।

ସେକେଣ୍ଡାରି ଟ୍ରେନିଂ ସ୍କୁଲ,
କଟକ
ତା ୨୭-୯-୬୩

ବିନୀତ
ଶ୍ରୀ ଧନେଶ୍ୱର ମହାପାତ୍ର

# ଅଭିମତ

ଖ୍ରୀଷ୍ଟାବ୍ଦ ଦଶମ ଶତକର ପ୍ରାୟ ପ୍ରଥମ ଭାଗର କବି ତଥା ନାଟ୍ୟକାର ରାଜଶେଖରଙ୍କ ଦ୍ୱାରା ପ୍ରାକୃତ ଭାଷାରେ ରଚିତ 'କର୍ପୂରମଞ୍ଜରୀ' ଭାରତୀୟ ନାଟ୍ୟସାହିତ୍ୟର ବିକାଶରେ ଏବଂ ଭାରତୀୟ ଆର୍ଯ୍ୟଭାଷାମାନଙ୍କର ବିବର୍ତ୍ତନରେ ବହୁ ପରିମାଣରେ ଆଲୋକପାତ କରେ । ରାଜଶେଖରଙ୍କ ଜୀବିତକାଳ ଆଧୁନିକ ଆର୍ଯ୍ୟ-ଭାରତୀୟ ଭାଷାମାନଙ୍କର ଜନ୍ମ ସମୟ ବୋଲି ଧରାଯାଇପାରେ । କର୍ପୂରମଞ୍ଜରୀର ପ୍ରସ୍ତାବନାରୁ ଜଣାଯାଏ, ରାଜଶେଖରଙ୍କ ପୂର୍ବବର୍ତ୍ତୀ ହରିଚନ୍ଦ୍ର, ନନ୍ଦିଚନ୍ଦ୍ର, କୋଟିଶ ଏବଂ ହାଳ ପ୍ରଭୃତି କବିମାନେ ପ୍ରାକୃତ ଭାଷାରେ କବିତା ଲେଖି ପ୍ରସିଦ୍ଧି ଲାଭ କରିଥିଲେ ଏବଂ ତାଙ୍କର ସମସାମୟିକ କବି 'ଅପରାଜିତ' ପ୍ରାକୃତ ଭାଷାରେ 'ମୃଗାଙ୍କଲେଖା' ନାମକ 'କଥା' ଲେଖିଥିଲେ । ଅପରାଜିତ ରାଜଶେଖରଙ୍କ ପ୍ରଶସ୍ତି ମଧ୍ୟ ଗାନ କରିଥିଲେ । ରାଜଶେଖରଙ୍କ ପୂର୍ବବର୍ତ୍ତୀ ପ୍ରାକୃତ କବିମାନଙ୍କ ସମ୍ବନ୍ଧରେ ହାଳଙ୍କ 'ଗାଥାସପ୍ତଶତୀ' ଅନୁସନ୍ଧେୟ । କର୍ପୂରମଞ୍ଜରୀର ଜିଜ୍ଞାସୁ ସମାଲୋଚକମାନଙ୍କୁ ଅନେକଗୁଡ଼ିଏ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼େ । ଏଗୁଡ଼ିକର ସମାଧାନ କରିବାରେ ଭାରତର ଓ ଅନ୍ୟାନ୍ୟ ଦେଶର ବହୁ ବିଦ୍ୱାନ୍ ଚେଷ୍ଟା କରିଛନ୍ତି ଏବଂ ସ୍ୱ-ସ୍ୱ ମାତୃଭାଷାରେ ଏହି ଗ୍ରନ୍ଥଟିକୁ ଅନୁବାଦ କରିଅଛନ୍ତି ।

ଉପର୍ଯ୍ୟୁକ୍ତ ବୈଶିଷ୍ଟ୍ୟ ଯୋଗୁଁ କର୍ପୂରମଞ୍ଜରୀ ଗ୍ରନ୍ଥଟି ଉତ୍କଳ ବିଶ୍ୱବିଦ୍ୟାଳୟ ସମେତ ଅନ୍ୟ କେତେକ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀରେ ପାଠ୍ୟପୁସ୍ତକ ରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ଓଡ଼ିଆ ଭାଷାରେ ଏହାର ଅନୁବାଦର ଅଭାବ ବହୁଦିନରୁ ଅନୁଭୂତ ହେଉଥିଲା । ତେଣୁ ଶ୍ରୀମାନ୍ ଧନେଶ୍ୱର ମହାପାତ୍ର ବହୁ ପରିଶ୍ରମ ସହକାରେ ଏହି ଗ୍ରନ୍ଥର ଆଲୋଚନାମୂଳକ ମୁଖବନ୍ଧ ଏବଂ ଆବଶ୍ୟକ ଟୀକାଟିପ୍ପଣୀ ସହିତ ଅନୁବାଦ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଛାତ୍ରଛାତ୍ରୀମାନଙ୍କର ଏକ ବଡ଼ ଅଭାବ ପୂରଣ କଲେ । ଶ୍ରୀମାନ୍ ମହାପାତ୍ର ଏଥିପୂର୍ବରୁ 'ଅଭିଜ୍ଞାନଶାକୁନ୍ତଳ' 'ମୃଚ୍ଛକଟିକ' ଏବଂ 'ମୁଦ୍ରାରାକ୍ଷସ' ନାମକ ତିନିଟି ସୁପ୍ରସିଦ୍ଧ ସଂସ୍କୃତ ନାଟକ ଓଡ଼ିଆରେ ଅନୁବାଦ କରି ସୁନାମ ଅର୍ଜନ କରିଛନ୍ତି । ବହୁ ବାଧାବିଘ୍ନ ମଧ୍ୟରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ତାଙ୍କର ଉଦ୍ୟମ ସର୍ବଥା ପ୍ରଶଂସନୀୟ । ତାଙ୍କ ଅନୂଦିତ 'କର୍ପୂରମଞ୍ଜରୀ' ଗ୍ରନ୍ଥ ସୁଧୀବର୍ଗଙ୍କ ଦ୍ୱାରା ସମାଦୃତ ହେବ ବୋଲି ମୋର ଆଶା । ଇତି ।

ତା ୨୦-୯-୬୩

**ଶ୍ରୀ କୁଞ୍ଜବିହାରୀ ତ୍ରିପାଠୀ**
ଓଡ଼ିଆ—ସଂସ୍କୃତ ବିଭାଗ,
ରେଭେନ୍ସା କଲେଜ, କଟକ

**ଏଇ ଲେଖକଙ୍କର**

ମୃଚ୍ଛ କଟିକ [ନାଟକ]

ମୁଦ୍ରା ରକ୍ଷସ ,,

ଅଭିଜ୍ଞାନ ଶାକୁନ୍ତଳମ୍ ,,

ଅଳଙ୍କାର ଦର୍ପଣ

# ରାଜଶେଖରଙ୍କ ରଚନାବଳୀ

ପ୍ରାଚୀନ ଭାରତର ଯେଉଁ ପ୍ରଥିତଯଶା ମହାକବିଗଣ କାବ୍ୟ-କବିତାର ଅମୃତମୟ, ଅମନ୍ଦମନ୍ଦାକିନୀ ପ୍ରବାହିତ କରିଯାଇଛନ୍ତି, ରାଜଶେଖର ସେମାନଙ୍କ ମଧ୍ୟରେ ଅନ୍ୟତମ । ବର୍ତ୍ତମାନ ତାଙ୍କଦ୍ୱାରା ରଚିତ କାବ୍ୟମୀମାଂସା, ବାଳରାମାୟଣ, ବାଳଭାରତ, କର୍ପୂରମଞ୍ଜରୀ ଓ ବିଦ୍ଧଶାଳଭଞ୍ଜିକା —ଏହି ପାଞ୍ଚଖଣ୍ଡ ଗ୍ରନ୍ଥ ମିଳୁଅଛି । କାବ୍ୟ-ମୀମାଂସା ଏକ ଅଳଙ୍କାରଶାସ୍ତ୍ର ଏବଂ ଅନ୍ୟଗୁଡ଼ିକ ଦୃଶ୍ୟକାବ୍ୟ । ଉକ୍ତ ଗ୍ରନ୍ଥଗୁଡ଼ିକ ତାଙ୍କର ମହୀୟସୀ ପ୍ରତିଭା ତଥା ଅଗାଧ ବିଦ୍ୱତ୍ତାର ପରିଚୟ ଦେଇ ତାଙ୍କୁ ଚିର-ଅମର କରିଅଛି ।

ବାଳଭାରତ ଦୁଇଗୋଟି ମାତ୍ର ଅଙ୍କ । ଏହା ବୋଧହୁଏ କବିଙ୍କ ଶେଷଜୀବନର ରଚନା ଏବଂ ଏହାକୁ ପୂର୍ଣ୍ଣ କରିବା ପୂର୍ବରୁ କବି ଇହଧାମରୁ ବିଦାୟ ନେଇଛନ୍ତି । କାବ୍ୟମୀମାଂସାର ଶାସ୍ତ୍ର-ସୂଚୀରେ ଅଠରଟି ଅଧିକରଣ (ବିଭାଗ)ର ଉଲ୍ଲେଖ ଥିଲେ ମଧ୍ୟ ବର୍ତ୍ତମାନ କେବଳ 'କବିରହସ୍ୟ' ନାମକ ମୂଳ ଅଧ୍ୟାୟଟିଏ ମିଳୁଅଛି । କେହି କେହି କହନ୍ତି—ବାଳଭାରତ ପରି କାବ୍ୟମୀମାଂସା ମଧ୍ୟ କବି ଅସମ୍ପୂର୍ଣ୍ଣ ରଖିଯାଇଛନ୍ତି । ମାତ୍ର କାବ୍ୟମୀମାଂସା ପୂର୍ଣ୍ଣତାପ୍ରାପ୍ତ ହୋଇଥିଲା ବୋଲି ମନେହୁଏ । କାରଣ, ପ୍ରଥମ ଅଧିକରଣରେ ପରବର୍ତ୍ତୀ ଅଧିକରଣର ଆଲୋଚ୍ୟ ବିଷୟ ଉଲ୍ଲିଖିତ ଥିବାର ଦେଖାଯାଏ ।

ସୂକ୍ତିମୁକ୍ତାବଳୀ, ସୁଭାଷିତହାରାବଳୀ, ଶାର୍ଙ୍ଗଧର ପଦ୍ଧତି, ଔଚିତ୍ୟବିଚାରଚର୍ଚ୍ଚା, କାବ୍ୟାନୁଶାସନ ପ୍ରଭୃତି ଗ୍ରନ୍ଥମାନଙ୍କରେ ଅନେକଗୁଡ଼ିଏ ଶ୍ଳୋକ ରାଜଶେଖରଙ୍କ ନାମରେ ଉଦ୍ଧୃତ ଅଛି । ଏହି ଶ୍ଳୋକଗୁଡ଼ିକ ଉପଯୁକ୍ତ ପାଞ୍ଚଖଣ୍ଡ ଗ୍ରନ୍ଥରେ ପରିଦୃଷ୍ଟ ହୁଏନାହିଁ । ବାଳରାମାୟଣର ପ୍ରସ୍ତାବନାରେ ନିଜେ ରାଜଶେଖର କହିଛନ୍ତି ଯେ ସେ ଛଅଟି ପ୍ରବନ୍ଧ (କାବ୍ୟ) ରଚନା କରିଛନ୍ତି * । ତେଣୁ ଜଣାଯାଏ, ଉକ୍ତ ପାଞ୍ଚଖଣ୍ଡ ବ୍ୟତୀତ ରାଜଶେଖର ଆହୁରି କେତେକ ଗ୍ରନ୍ଥ ମଧ୍ୟ ପ୍ରଣୟନ କରିଥିଲେ, ଯାହା କି ବର୍ତ୍ତମାନ ଲୁପ୍ତ ।

ଏହି ଲୁପ୍ତଗ୍ରନ୍ଥଗୁଡ଼ିକ ମଧ୍ୟରୁ 'ହରବିଳାସ' କାବ୍ୟ ଅନ୍ୟତମ । ହେମଚନ୍ଦ୍ରଙ୍କ କାବ୍ୟାନୁଶାସନରେ ଉକ୍ତ କାବ୍ୟର ନାମ ଏବଂ ରାଜଶେଖର ଏହାର କବି ବୋଲି ସ୍ପଷ୍ଟ ଉଲ୍ଲେଖ ଅଛି । ଆଉ ମଧ୍ୟ ପରବର୍ତ୍ତୀ ବିଭିନ୍ନ ଗ୍ରନ୍ଥକାର ନିଜ ନିଜ ଗ୍ରନ୍ଥରେ ଏହାର ଶ୍ଳୋକ ଉଦ୍ଧୃତ କରିଛନ୍ତି ।

— — —

## ରାଜଶେଖରଙ୍କ ସମୟ

କର୍ପୂରମଞ୍ଜରୀ, ବିଦ୍ଧଶାଳଭଞ୍ଜିକା, ବାଳରାମାୟଣ ଓ ବାଳଭାରତର ପ୍ରସ୍ତାବନାମାନଙ୍କରେ ରାଜଶେଖର ନିଜକୁ ରଘୁକୁଳ-ଚୂଡ଼ାମଣି ମହେନ୍ଦ୍ରପାଳଙ୍କ ଗୁରୁ ବୋଲି ଉଲ୍ଲେଖ କରିଛନ୍ତି । ବାଳ-ଭାରତର ପ୍ରସ୍ତାବନାରେ ସେ 'ନିର୍ଭୟ' ନରେନ୍ଦ୍ରଙ୍କ ପୁତ୍ର 'ରଘୁବଂଶ-ମୁକ୍ତାମଣି' ମହୀପାଳ ଦେବଙ୍କର ମଧ୍ୟ ବର୍ଣ୍ଣନା କରିଛନ୍ତି । 'ନିର୍ଭୟ'

* "ବିଦ୍ଧି ନଃ ଷଟ୍‌ପ୍ରବନ୍ଧାନ୍ ।"

ମହେନ୍ଦ୍ରପାଳଙ୍କ ନାମାନ୍ତର କିମ୍ବା ଉପାଧି ଥିଲା । * ତେଣୁ ଜଣାଯାଏ, ରାଜଶେଖର ରଘୁବଂଶର ରାଜା ମହେନ୍ଦ୍ରପାଳଙ୍କର ଗୁରୁ ତଥା ସଭାକବି ଥିଲେ ଏବଂ ମହେନ୍ଦ୍ରପାଳଙ୍କ ପରେ ତାଙ୍କ ପୁତ୍ର ମହୀପାଳଦେବଙ୍କର ମଧ୍ୟ ପୃଷ୍ଠପୋଷକତା ଲାଭ କରିଥିଲେ ।

ଉକ୍ତ ମହେନ୍ଦ୍ରପାଳ ଓ ମହୀପାଳ ମଧ୍ୟଦେଶର ** ରାଜଧାନୀ କାନ୍ୟକୁବ୍ଜରେ ରାଜତ୍ୱ କରିଥିଲେ । ବାଳଭାରତର ପ୍ରସ୍ତାବନାରେ ନିଜେ କବି ସୂତ୍ରଧାର ମୁଖରେ ବର୍ଣ୍ଣନା କରିଛନ୍ତି— "କଥମତେ ମହୋଦୟ-ମହାନଗର-ଲ୍ଲାମୀବତଂସା ବିଦ୍ୱାଂସଃ ସାମାଜିକାଃ" (କଅଣ ମହୋଦୟ—ମହାନଗରର ଭୂଷଣ ସ୍ୱରୂପ ଏହି ପଣ୍ଡିତ-

---

* "ବାଳକଇ କଇରାଓ ଣିବ୍ଭଅରାଅସ୍ସ ତହ ଉବଜ୍ଝାଓ ।"

[ବାଳକବିଃ କବିରାଜୋ ନିର୍ଭୟରାଜସ୍ୟ ତଥୋପାଧ୍ୟାୟଃ]
(କର୍ପୂରମଞ୍ଜରୀର ପ୍ରସ୍ତାବନା)

* * ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ ବିନ୍ଧ୍ୟ ପର୍ଯ୍ୟନ୍ତ, ପୂର୍ବରେ ପ୍ରୟାଗଠାରୁ ପଶ୍ଚିମରେ ବିନଶନ (ଯେଉଁଠାରେ ସରସ୍ୱତୀ ନଦୀ ଲୁପ୍ତ ହୋଇଅଛି) ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳକୁ ମଧ୍ୟଦେଶ କୁହାଯାଉଥିଲା । କିନ୍ତୁ ରାଜଶେଖରଙ୍କ ସମୟରେ 'ମଧ୍ୟଦେଶ' ପୂର୍ବରେ ବାରାଣସୀ ପର୍ଯ୍ୟନ୍ତ ବିସ୍ତୃତି ଲାଭକରିଥିଲା । ବାରାଣସୀର ପୂର୍ବକୁ 'ପୂର୍ବଦେଶ' ଅବସ୍ଥିତ ଥିଲା । କାବ୍ୟମୀମାଂସାର ସପ୍ତଦଶ ଅଧ୍ୟାୟରେ ଉଲ୍ଲେଖ ଅଛି—'ତତ୍ର ବାରାଣସ୍ୟାଃ ପୁରତଃ ପୂର୍ବଦେଶଃ ।'

ମାନେ ଦର୍ଶକ ! ) । ଏହି 'ମହୋଦୟ' କାନ୍ୟକୁବ୍‌ଜର ନାମାନ୍ତର ଥିଲା । * କାନ୍ୟକୁବ୍‌ଜ କବି, ପଣ୍ଡିତମାନଙ୍କର ପ୍ରିୟସ୍ଥଳୀ ଥିଲା । ଭବଭୂତି, ବାଣଭଟ୍ଟ, ଶ୍ରୀହର୍ଷ, ବାକ୍‌ପତିରାଜ ପ୍ରଭୃତି ମହାକବିମାନେ ବିଭିନ୍ନ ସମୟରେ କାନ୍ୟକୁବ୍‌ଜର ରାଜାମାନଙ୍କ ସଭା ଅଳଙ୍କୃତ କରିଥିଲେ ।

୯୧୭-୯୧୮ ଖ୍ରୀଷ୍ଟାବ୍ଦର ଅସ୍‌ନି ଶିଳାଲେଖ ଓ ସିୟୋଡନି ଶିଳାଲେଖାରୁ ଜଣାଯାଏ, କାନ୍ୟକୁବ୍‌ଜର ରାଜା ମହେନ୍ଦ୍ରପାଳ ଓ ମହୀପାଳ ଗୁର୍ଜର-ପ୍ରତିହାରବଂଶୀୟ ଥିଲେ । ଐତିହାସିକ ତଥା ପତ୍ନତାତ୍ତ୍ୱିକ ପ୍ରମାଣ ମିଳେ ଯେ ମହେନ୍ଦ୍ରପାଳ ୮୯୦ରୁ ୯୦୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏବଂ ମହୀପାଳ ୯୧୦ ରୁ ୯୪୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ରାଜଶେଖର ମହୀପାଳଙ୍କ ସଭାରେ ଜୀବନର ଅଳ୍ପ ସମୟ ଅତିବାହିତ କରିଥିଲେ ବୋଲି ମନେହୁଏ । କାରଣ, ବାଳଭାରତ ନାମକ ଯେଉଁ ନାଟକ ଖଣ୍ଡିକ ମହୀପାଳଙ୍କ ସଭାରେ ଅଭିନୀତ ହେବାକୁ ରଚିତ ହୋଇଥିଲା, ତାହା ଅସମ୍ପୂର୍ଣ୍ଣ ରହିଅଛି । ଏହି ବାଳଭାରତ ବୋଧହୁଏ କବିଙ୍କର ଶେଷଜୀବନର ରଚନା । ତେଣୁ ୮୮୦ରୁ ୯୨୦ ପର୍ଯ୍ୟନ୍ତ ରାଜଶେଖରଙ୍କର ସାହିତ୍ୟିକ ଜୀବନ-କାଳ ବୋଲି ଧରାଯାଇପାରେ ।

---

* ହୈମନାମମାଳାରେ— 'ମାନ୍ୟକୁବ୍‌ଜଂ ମହୋଦୟଂ, କନ୍ୟାକୁବ୍‌ଜଂ ଗାଧିପୁରଂ କୌଶଂ କୁଶସ୍ଥଳଂ ଚ ତତ୍ ।' ବିଶ୍ୱ-ପ୍ରକାଶ ଓ ମେଦିନୀକୋଷରେ—ମହୋଦୟ କାନ୍ୟକୁବ୍‌ଜେ । ବାଲ୍ମୀକିରାମାୟଣରେ ମଧ୍ୟ କାନ୍ୟକୁବ୍‌ଜକୁ ମହୋଦୟ ଓ ଗାଧିପୁର ବୋଲି କୁହାଯାଇଛି । ଏହାଛଡ଼ା ମହେନ୍ଦ୍ରପାଳଙ୍କ ଦ୍ୱାରା ପ୍ରଦତ୍ତ ଯେଉଁ ଦାନପତ୍ର ମିଳିଛି, ସେଥିରେ ମଧ୍ୟ ମହୋଦୟ ନାମ ଥିବାର ଦେଖାଯାଏ ।

ଉକ୍ତ ନିର୍ଣ୍ଣୟର ସପକ୍ଷରେ ଆହୁରି କେତେକ ପ୍ରମାଣ ମଧ୍ୟ ଅଛି । ରାଜଶେଖର କାବ୍ୟମୀମାଂସାରେ ଅନ୍ୟାନ୍ୟ କବିମାନଙ୍କ ସହିତ ଉଦ୍‌ଭଟ ଏବଂ ଆନନ୍ଦବର୍ଦ୍ଧନଙ୍କର ନାମୋଲ୍ଲେଖ କରିଛନ୍ତି । ଉଦ୍‌ଭଟ କାଶ୍ମୀରରାଜ ଜୟାପୀଡ଼ଙ୍କ (୭୭୯-୮୧୩ ଖ୍ରୀଷ୍ଟାବ୍ଦ) ସମକାଳୀନ ଏବଂ ଆନନ୍ଦବର୍ଦ୍ଧନ କାଶ୍ମୀରରାଜ ଅବନ୍ତୀ ବର୍ମାଙ୍କ (୮୫୭-୮୮୪ଖ୍ରୀଷ୍ଟାବ୍ଦ)ସମକାଳୀନ ଥିଲେ । ଏହାଛଡ଼ା ସୋମଦେବଙ୍କ ଯଶସ୍ତିଳକଚମ୍ପୂରେ ଏବଂ ସୋଢ଼୍‌ଢଲଙ୍କ ଉଦୟସୁନ୍ଦରୀରେ ରାଜଶେଖରଙ୍କ ନାମ ଉଲ୍ଲିଖିତ ଅଛି । ଯଶସ୍ତିଳକ ଚମ୍ପୂ ୯୬୦ ଖ୍ରୀଷ୍ଟାବ୍ଦରେ ଏବଂ ଉଦୟସୁନ୍ଦରୀ ୯୯୦ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲା । ଯଶସ୍ତିଳକଚମ୍ପୂରେ ଉଲ୍ଲିଖିତ ରାଜଶେଖରଙ୍କୁ 'ପ୍ରବନ୍ଧକୋଷ'ର ରଚୟିତା ରାଜଶେଖର ବୋଲି ବୁଝାଯାଇ ନ ପାରେ । କାରଣ, ପ୍ରବନ୍ଧକୋଷ ୧୩୪୭ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିବାରୁ ତାହା ଯଶସ୍ତିଳକଚମ୍ପୂଠାରୁ ଅର୍ବାଚୀନ ।

ତଥାପି ରାଜଶେଖରଙ୍କ ସମୟ ନିରୂପଣରେ ବିଭିନ୍ନ ମତ ପରିଦୃଷ୍ଟ ହୁଏ । ମହେନ୍ଦ୍ରପାଳଙ୍କ ଦ୍ୱାରା ପ୍ରଦତ୍ତ ଦାନପତ୍ର ୧୫୫ ଅଙ୍କରେ ଲିଖିତ । ଏହି ଅଙ୍କ ହର୍ଷବର୍ଦ୍ଧନଙ୍କ ଦ୍ୱାରା ପ୍ରବର୍ତ୍ତିତ ଅଙ୍କ ବୋଲି ଇଂରାଜୀ ପଣ୍ଡିତ ଫ୍ଲିଟ୍ ମହୋଦୟଙ୍କ ମତ । ହର୍ଷବର୍ଦ୍ଧନ ୬୦୬ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ତେଣୁ ୬୦୬+୧୫୫=୭୬୧ରେ ଉକ୍ତ ଦାନପତ୍ର ଲିଖିତ ହୋଇଥିଲା ବୋଲି ଧରି ଫ୍ଲିଟ୍ ମହୋଦୟ ମହେନ୍ଦ୍ରପାଳଙ୍କ ସମସାମୟିକ ରାଜଶେଖରଙ୍କୁ ଅଷ୍ଟମ ଶତାବ୍ଦୀରେ ଅବସ୍ଥାପିତ କରିଛନ୍ତି । କିନ୍ତୁ ଏ ମତ ଠିକ୍ ନୁହେଁ । କାରଣ, ମହେନ୍ଦ୍ରପାଳଙ୍କ ଦାନପତ୍ରରେ ଲିଖିତ ଅଙ୍କ ହର୍ଷାବ୍ଦ ବୋଲି କୌଣସି ପ୍ରମାଣ ନାହିଁ । ଏହା କେବଳ ଅନୁମାନ ଉପରେ ପ୍ରତିଷ୍ଠିତ ।

ମାଧବାଚାର୍ଯ୍ୟଙ୍କ ପ୍ରଣୀତ 'ଶଙ୍କର-ବିଜୟ' କାବ୍ୟରେ ବର୍ଣ୍ଣିତ ଅଛି - ରାଜଶେଖର ନିଜ ରଚିତ ତିନିଖଣ୍ଡ ନାଟକ ଶଙ୍କରାଚାର୍ଯ୍ୟଙ୍କୁ ଉପହାର ଦେଇଥିଲେ * । କିନ୍ତୁ ଉକ୍ତ ରାଜଶେଖର ଆମର ଆଲୋଚ୍ୟ ରାଜଶେଖର ନୁହନ୍ତି । ଶଙ୍କରବିଜୟରେ ବର୍ଣ୍ଣିତ ରାଜଶେଖର କେରଳ ଦେଶର ରାଜା ଥିଲେ ଏବଂ ୭ମ ଶତାବ୍ଦୀର ପ୍ରାରମ୍ଭରେ ଆବିର୍ଭୂତ ଶଙ୍କରାଚାର୍ଯ୍ୟଙ୍କର ସମକାଳୀନ ଥିଲେ ।

ଭଣ୍ଡାରକରଙ୍କ ମତରେ ରାଜଶେଖରଙ୍କ ସମୟ ଖ୍ରୀଷ୍ଟପର ଦଶମ ଶତାବ୍ଦୀ । ଏଚ୍. ଏଚ୍. ଉଇଲସନ୍‌ଙ୍କ ମତରେ ୧୧ଶ ଶତାବ୍ଦୀରେ ଶେଷ ବା ୧୨ଶ ଶତାବ୍ଦୀର ଆରମ୍ଭ ; ମାକ୍ସମୂଲର

---

* 'ତତୋଽଭବତ୍ କଶ୍ଚନ ରାଜଶେଖରଃ' (ଶଙ୍କରବିଜୟ, ୨ୟ ସର୍ଗ) 'ଏବମେନମନ୍ତମର୍ତ୍ତ୍ୟ ଚରିତଂ ମେବମାନଜନ ଦୈନ୍ୟଲବିତମ୍ । କେରଳକ୍ଷିତିପତିର୍ଦିଦୃକ୍ଷୁଃ ପ୍ରାପ୍ତଶୋତ୍ ସବେ ମାଦୃତଭିକ୍ଷୁଃ ॥'
'ତେନ ପୃଷ୍ଟକୁଶଳଃ କ୍ଷିତିପାଳଃ ସ୍ୱେନ ସୃଷ୍ଟମଥ ଶାନ୍ତବକାଳଃ ।
ହାଟକାପ୍ଲୁତ ସମର୍ପଣପୂର୍ବଂ ନାଟକତ୍ରୟମବୋଚଦପୂର୍ବମ୍ ॥'
(୫ମ ସର୍ଗ)

କବିତାକୁଶଳୋଽଥ କେରଳକ୍ଷ୍ମାକମନଃ
କେଶ୍ଚନ ରାଜଶେଖରାଖ୍ୟ ।
ମୁନିବର୍ଯ୍ୟ ମମ୍ଭଂ ମୁଦା ଦଦତେନେ
ନିଜକୋଟୀର ନିଘୃଷ୍ଟପାଦରବାଗ୍ରମ୍ ॥
ପ୍ରତଥେ କମୁ ନାଟକତ୍ରୟୀ ସେତ୍ୟମୁନା
ସଂଯମିନା ତତୋ ନିଯୁକ୍ତଃ ।'
[୪ର୍ଥ ସର୍ଗ]

ଭ୍ରମବଶତଃ ୧୪ଶ ଶତାବ୍ଦୀର ପ୍ରବନ୍ଧକୋଷର ରଚୟିତା ରାଜଶେଖର ଏବଂ ଆଲୋଚ୍ୟ ରାଜଶେଖରଙ୍କୁ ଏକ ବୋଲି ନିର୍ଣ୍ଣୟ କରିଛନ୍ତି । ଏହିପରି ବିଭିନ୍ନ ଆଲୋଚକ ତାଙ୍କୁ ୬ମ ଶତାବ୍ଦୀରୁ ୧୮ଶ ଶତାବ୍ଦୀ ମଧ୍ୟରେ ବିଭିନ୍ନ ସମୟରେ ଅବସ୍ଥାପିତ କରିଛନ୍ତି ।

ସେ ଯାହାହେଉ, ରାଜଶେଖରଙ୍କ ଜୀବନକାଳ ନବମ ଶତାବ୍ଦୀର ଶେଷଭାଗ ଓ ଦଶମ ଶତାବ୍ଦୀର ଆଦ୍ୟଭାଗ ବୋଲି ଗ୍ରହଣ କରିବା ଅଧିକ ଯୁକ୍ତିଯୁକ୍ତ ।

---

## ରାଜଶେଖରଙ୍କ ଜନ୍ମସ୍ଥାନ

ରାଜଶେଖର ତାଙ୍କ ରଚନାବଳୀର କୌଣସି ସ୍ଥାନରେ ନିଜ ଜନ୍ମଭୂମି ସମ୍ବନ୍ଧରେ ସ୍ପଷ୍ଟ କରି କିଛି ଉଲ୍ଲେଖ କରିନାହାନ୍ତି । ତେଣୁ ପ୍ରକୃତରେ ସେ କେଉଁ ଅଞ୍ଚଳର ଲୋକ ଥିଲେ, ତାହା ନିର୍ଣ୍ଣୟ କରିବା କଠିନ । ଏ ସଂପର୍କରେ ମୁଖ୍ୟତଃ ଦୁଇଟି ମତ ଦେଖାଯାଏ ।

ପ୍ରଥମଟି ହେଉଛି—ରାଜଶେଖର ମହାରାଷ୍ଟ୍ରର ଅଧିବାସୀ ଥିଲେ । ବିଦ୍ଧଶାଳଭଞ୍ଜିକାରେ ସେ ନିଜକୁ ଅକାଳଜଳଦଙ୍କର ପ୍ରଣପ୍ତା ଅର୍ଥାତ୍ ଅଣନାତି ବୋଲି କହିଛନ୍ତି । ବାଳରାମାୟଣର ପ୍ରସ୍ତାବନାରେ ମଧ୍ୟ ସେ ଏହା ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଅକାଳଜଳଦଙ୍କୁ 'ମହାରାଷ୍ଟ୍ରଚୂଡ଼ାମଣି' ବିଶେଷଣରେ ବିଶେଷିତ କରିଛନ୍ତି* । ଏଥିରୁ ଜଣାଯାଏ, ଅକାଳଜଳଦ ମହାରାଷ୍ଟ୍ରର ଅଧିବାସୀ ଥିଲେ । ତେଣୁ ଉକ୍ତ ରାଜ୍ୟ ରାଜଶେଖରଙ୍କର ମଧ୍ୟ ଜନ୍ମଭୂମି ଥିଲା ।

---

* 'ତଦାମୁଷ୍ୟାୟଣସ୍ୟ ମହାରାଷ୍ଟ୍ର ଚୂଡ଼ାମଣେର କାଳଜଳଦସ୍ୟ ଚତୁର୍ଥଃ' ।

ଅବଶ୍ୟ ବର୍ତ୍ତମାନର ମହାରାଷ୍ଟ୍ର ଓ ସେତେବେଳର ମହାରାଷ୍ଟ୍ର ମଧ୍ୟରେ ଆୟତନଗତ ପାର୍ଥକ୍ୟ ଥିଲା । ସେତେବେଳେ କୁନ୍ତଳ ଓ ବିଦର୍ଭ ମିଶି ମହାରାଷ୍ଟ୍ର ଗଠିତ ହୋଇଥିଲା । ରାଜଶେଖର ସମ୍ଭବତଃ ବିଦର୍ଭ ବା ଆଧୁନିକ ବେରାର ଅଞ୍ଚଳର ଲୋକ ଥିଲେ ।

ଉକ୍ତ ମତ ସପକ୍ଷରେ କେତେକ ଯୁକ୍ତି ଉପସ୍ଥାପିତ କରାଯାଏ ।

(୧) ମହାରାଷ୍ଟ୍ରୀ ପ୍ରାକୃତ ପ୍ରକୃଷ୍ଟ * ପ୍ରାକୃତ ବୋଲି ବିବେଚିତ ହେଉଥିଲା ଏବଂ ରାଜଶେଖର ମଧ୍ୟ ପ୍ରାକୃତଭାଷାର ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ । ସେ ଯଦି ମହାରାଷ୍ଟ୍ରର ଲୋକ ହୋଇଥାଆନ୍ତେ, ତେବେ ପ୍ରକୃଷ୍ଟ ମାତୃଭୂମି-ପ୍ରାକୃତକୁ ଛାଡ଼ି ଶୌରସେନୀରେ କାହିଁକି କର୍ପୂରମଞ୍ଜରୀ ନାଟିକା ଲେଖିଥାଆନ୍ତେ ? ଅଧିକନ୍ତୁ, ସେ ପ୍ରାକୃତକୁ ମହାରାଷ୍ଟ୍ରର ଲୋକପ୍ରିୟ ଭାଷା ବୋଲି ନ କହି ଲାଟ୍ ଦେଶର ଲୋକ-ପ୍ରିୟ ଭାଷା ବୋଲି କହିଛନ୍ତି ।

(୨) ସେ ପ୍ରାଚୀନ ରାଜାମାନଙ୍କର ବିଭିନ୍ନ ଭାଷାଗତ ରୁଚି ବର୍ଣ୍ଣନା କରିଥିଲେ ମଧ୍ୟ ମହାରାଷ୍ଟ୍ରର କୌଣସି ରାଜା ମହାରାଷ୍ଟ୍ରୀ ପ୍ରାକୃତର ପୃଷ୍ଠପୋଷକ ଥିଲେ ବୋଲି କୌଣସିଠାରେ ଉଲ୍ଲେଖ କରି ନାହାନ୍ତି । ସେ ଯଦି ମହାରାଷ୍ଟ୍ରର ଅଧିବାସୀ ହୋଇଥାଆନ୍ତେ,ତେବେ ମାତୃଭୂମି ପ୍ରତି ଏପରି ଅବହେଳା ଦେଖାଇ ନ ଥାନ୍ତେ ।

(୩) ଯଦି କୁହାଯାଏ, ରାଜଶେଖରଙ୍କ ସମୟକୁ ମହାରାଷ୍ଟ୍ରୀ ପ୍ରାକୃତର ପ୍ରଭାବ ହ୍ରାସ ପାଇଥିଲା, ତେଣୁ ସେ ତାହା ବିଷୟରେ

---

* "ମହାରାଷ୍ଟ୍ରାଶ୍ରୟାଂ ଭାଷାଂ ପ୍ରକୃଷ୍ଟଂ
ପ୍ରାକୃତଂ ବିଦୁଃ ।"
(କାବ୍ୟାଦର୍ଶ, ଦଣ୍ଡୀ)

ମାରବ ରହିଛନ୍ତି, ଏହା ମଧ୍ୟ ଭିତ୍ତିହୀନ । କାରଣ, ରାଜଶେଖରଙ୍କ ସମସ୍ତଙ୍କୁ ମହାରାଷ୍ଟ୍ରୀ ପ୍ରାକୃତର ପ୍ରଭାବ ହ୍ରାସ ପାଇଥିବାର କୌଣସି ପ୍ରମାଣ ନାହିଁ ।

(୪) ସେତେବେଳେ ବିଦର୍ଭ ଓ କୁନ୍ତଳ ମିଶି ମହାରାଷ୍ଟ୍ର ଗଠିତ ହୋଇ ନ ଥିଲା । କାବ୍ୟମୀମାଂସାରେ ମହାରାଷ୍ଟ୍ରକୁ ବିଦର୍ଭ ଓ କୁନ୍ତଳର ଭିନ୍ନ ଦାକ୍ଷିଣାତ୍ୟର ଏକ ସ୍ୱତନ୍ତ୍ର ରାଜ୍ୟ ବୋଲି କୁହାଯାଇଛି । ତେଣୁ ମହାରାଷ୍ଟ୍ରକୁ ବା ମହାରାଷ୍ଟ୍ର ଅନ୍ତର୍ଗତ ବିଦର୍ଭକୁ ରାଜଶେଖରଙ୍କ ଜନ୍ମସ୍ଥାନ ବୋଲି ଗ୍ରହଣ କରାଯାଇ ନ ପାରେ ।

ଅନ୍ୟ ମତଟି ହେଉଛି—ମଧ୍ୟଦେଶ ତାଙ୍କର ଜନ୍ମସ୍ଥାନ ଥିଲା । ଏଥିପାଇଁ ନିମ୍ନଲିଖିତ ଯୁକ୍ତିଗୁଡ଼ିକ ଉପସ୍ଥାପିତ କରାଯାଏ ।

(୧) ରାଜଶେଖର ଶୌରସେନୀ ପ୍ରାକୃତରେ କର୍ପୂରମଞ୍ଜରୀ ଲେଖିଛନ୍ତି । ଶୌରସେନୀ ମଧ୍ୟଦେଶର ପ୍ରାକୃତ ଥିଲା ।

(୨) କାବ୍ୟମୀମାଂସାରେ ସେ ଲେଖିଛନ୍ତି—"ଯୋ ମଧ୍ୟଦେଶଂ ନିବସତି, ସ କବିଃ ସର୍ବଭାଷାନିଷଣ୍ଣଃ" ଅର୍ଥାତ୍ ଯେଉଁ କବି ମଧ୍ୟଦେଶରେ ବାସ କରନ୍ତି, ସେ ସମସ୍ତ ଭାଷାରେ ପ୍ରବୀଣ ହୁଅନ୍ତି । ରାଜଶେଖର ମଧ୍ୟ ନିଜକୁ 'ସର୍ବଭାଷା ଚତୁର' ବୋଲି କହିଛନ୍ତି * ।

(୩) ସେ ପାଞ୍ଚାଳ ଓ କାନ୍ୟକୁବ୍ଜ ପ୍ରତି ବିଶେଷ ଅନୁରକ୍ତି ପ୍ରଦର୍ଶନ କରିଛନ୍ତି । ଉକ୍ତ ରାଜ୍ୟଦ୍ୱୟ ମଧ୍ୟଦେଶର ଅନ୍ତର୍ଗତ ଥିଲା ।

---

* 'ସବ୍ବଭାସାଚଉରେଣ ତେଣ ଭଣିଦଂ ଜେବ୍ବ ।'
(ସର୍ବଭାଷା ଚତୁରେଣ ତେନ ଭଣିତଂ ଏବ)

(କର୍ପୂରମଞ୍ଜରୀ, ପ୍ରସ୍ତାବନା)

ମଧ୍ୟଦେଶର କେଉଁ ଅଞ୍ଚଳରେ ସେ ଜନ୍ମଗ୍ରହଣ କରିଥିଲେ, ତାହା ଅବଶ୍ୟ ନିର୍ଣ୍ଣୟ କରିବା ସହଜ ନୁହେଁ ।

ଉପର୍ଯ୍ୟୁକ୍ତ ମତ ଦୁଇଟି ମଧ୍ୟରେ ସାମଞ୍ଜସ୍ୟ ଆଣିବା ପାଇଁ ଅନୁମାନ କରାଯାଇପାରେ, ରାଜଶେଖରଙ୍କ ପୂର୍ବପୁରୁଷମାନେ ମହାରାଷ୍ଟ୍ରରେ ବାସକରୁଥିଲେ, କିନ୍ତୁ କାଳକ୍ରମେ ସେଠାରୁ ମଧ୍ୟ-ଦେଶକୁ ଚାଲି ଆସିଥିଲେ ।

---

## ବଂଶପରିଚୟ

ରାଜଶେଖରଙ୍କ ରଚନାବଳୀରୁ ତାଙ୍କର ବଂଶପରିଚୟ କେତେକ ପରିମାଣରେ ମିଳେ । ବାଳରାମାୟଣର ପ୍ରସ୍ତାବନାରେ ଏବଂ କାବ୍ୟ-ମୀମାଂସାର ବିଭିନ୍ନ ସ୍ଥଳରେ ସେ ନିଜର ପରିଚୟ ଦେଇଛନ୍ତି —'ଯାଯାବରୀୟ' ଅର୍ଥାତ୍ ଯାଯାବର କୁଳରୁ ଜାତ । ପରବର୍ତ୍ତୀ କବି, ସାହିତ୍ୟିକମାନଙ୍କଠାରେ ମଧ୍ୟ ସେ ମୁଖ୍ୟତଃ ଉକ୍ତ ନାମରେ ପରିଚିତ । ଯାଯାବରବଂଶ ଖୁବ୍ ପ୍ରସିଦ୍ଧି ଲାଭ କରିଥିଲା । ଏଥିରେ ପ୍ରଖ୍ୟାତ ପଣ୍ଡିତ, କବି ଓ କର୍ମକୁଶଳ ବ୍ୟକ୍ତିମାନେ ଜନ୍ମଗ୍ରହଣ କରିଥିଲେ । ବାଳରାମାୟଣର ପ୍ରସ୍ତାବନାରେ ରାଜଶେଖର ନିଜ ବଂଶର ଗୌରବ ଗାନ କରିଛନ୍ତି । * ଅକାଳଜଳଦ, ସୁରାନନ୍ଦ, କବିରାଜ ଓ

---

* 'ସ ମୂର୍ତ୍ତୋ ଯତ୍ରାସୀଦ୍‌ଗୁଣଗଣ ଇବାକାଳ ଜଳଦଃ
ସୁରାନନ୍ଦଃ ସୋଽପି ଶ୍ରବଣପୁଟପେୟେନ ବଚସା ।
ନ ଚାନ୍ୟେ ଗଣ୍ୟନ୍ତେ ତରଳ କବିରାଜ ପ୍ରଭୃତୟୋ
ମହାଭାଗସ୍ତସ୍ମିନ୍ନୟ ମଜନି ଯାଯାବର କୁଳେ ।।'

ତରଳ ପ୍ରଭୃତି ବିଦ୍ୱାନ୍ ଉକ୍ତ ବଂଶର ଲୋକଥିଲେ ଏବଂ ଏମାନେ ରାଜଶେଖରଙ୍କର ଥିଲେ ପୂର୍ବପୁରୁଷ । ତାଙ୍କର ପ୍ରପିତାମହ ଅକାଳ-ଜଳଦ *୧ ନିଜେ ଉଚ୍ଚକୋଟୀର କବିରୂପେ ସମଗ୍ର ମହାରାଷ୍ଟ୍ରରେ ଖ୍ୟାତିଲାଭ କରିଥିଲେ । ସୁରାନନ୍ଦ *୨ ଚେଦିରାଜ ରଣବିଗ୍ରହଙ୍କର ସଭାକବି ଥିଲେ । *୩ ତରଳଙ୍କର ମଧ୍ୟ କବିଖ୍ୟାତି ଯଥେଷ୍ଟ ଥିଲା । କବିରାଜଙ୍କ ସମ୍ବନ୍ଧରେ କିଛି ଜଣାଯାଏ ନାହିଁ । ଯେଉଁ 'ରାଘବ-ପାଣ୍ଡବୀୟ' କାବ୍ୟରେ ମହାଭାରତ ଓ ରାମାୟଣର ବୃତ୍ତାନ୍ତ ଯୁଗପତ୍ ବର୍ଣ୍ଣିତ ହୋଇଛି, ତାହାର ରଚୟିତାଙ୍କ ନାମ କବିରାଜ । ମାତ୍ର ଏହି କବିରାଜ ଦ୍ୱାଦଶ ଶତାବ୍ଦୀର ଲୋକ । ତେଣୁ ସେ ରାଜଶେଖରଙ୍କ ପୂର୍ବପୁରୁଷ ନୁହନ୍ତି ।

ଯାଯାବର ବଂଶର ବୋଧହୁଏ ଅନେକ ଶାଖାଥିଲା ଏବଂ ଉପର୍ଯୁକ୍ତ କବି, ପଣ୍ଡିତମାନେ ଏହାର ବିଭିନ୍ନ ଶାଖାରୁ ଜନ୍ମ ଗ୍ରହଣ କରିଥିଲେ । ରାଜଶେଖର ତରଳଙ୍କ ପ୍ରଶଂସାସୂଚକ

---

*୧ ଅକାଳ ଜଳଦେନ୍ଦୋଃ ସା ହୃଦ୍ୟବଚନଚନ୍ଦ୍ରିକା ।
ନିତ୍ୟଂ କବିଚକୋରୈର୍ଯା ପୀୟତେ ନ ତୁ ହୀୟତେ ।।'
(ସୂକ୍ତି ମୁକ୍ତାବଳୀ)

*୨ ନଦୀନାଂ ମେକଳସୁତା ନୃପାଣାଂ ରଣବିଗ୍ରହଃ ।
କବୀନାଂ ଚ ସୁରାନନ୍ଦଶ୍ଚେଦିମଣ୍ଡଳମଣ୍ଡନମ୍ ।।'
(ସୂକ୍ତି ମୁକ୍ତାବଳୀ)

*୩ ଯାଯାବରକୁଳଶ୍ରେଣେର୍ହାରଯଷ୍ଟେଶ୍ଚ ମଣ୍ଡନମ୍ ।
ସୁବର୍ଣ୍ଣବନ୍ଧରୁଚିରସ୍ତରଳସ୍ତରଳୋ ଯଥା ।।'
(ସୂକ୍ତି ମୁକ୍ତାବଳୀ)

ଶ୍ଳୋକରେ 'ଯାଯାବରକୁଳଶ୍ରେଣୀ' ବୋଲି ଉଲ୍ଲେଖ କରିଥିବାରୁ ଏହି ଅନୁମାନ କରାଯାଏ ।

ବାଳରାମାୟଣର ପ୍ରସ୍ତାବନାରୁ ଜଣାଯାଏ, ରାଜଶେଖରଙ୍କ ପିତାଙ୍କ ନାମ ଦୁର୍ଦୁକ ଏବଂ ମାତାଙ୍କ ନାମ ଥିଲା ଶୀଳବତୀ । * ଦୁର୍ଦୁକ ଜଣେ ରାଜାଙ୍କର ମହାମାତ୍ର ଥିଲେ ।

ଯାଯାବର ବଂଶର ଇତିହାସ ସମ୍ପର୍କରେ ପଣ୍ଡିତମାନେ କହନ୍ତି, ପ୍ରାଚୀନ କାଳରେ ଭାରତରେ କେତେକ ଯାଯାବର ଅର୍ଥାତ୍ ଭ୍ରମଣଶୀଳ ଜାତିଥିଲେ । ସେମାନେ କାଳକ୍ରମେ ସ୍ଥାୟୀଭାବରେ ବାସ କରିବାକୁ ଲାଗିଲେ ଏବଂ ଯାଯାବର ସ୍ୱଭାବ ପରିତ୍ୟାଗ କରି ଉଦାର ହିନ୍ଦୁସମାଜର ଅନ୍ତର୍ଭୁକ୍ତ ହୋଇଗଲେ । କେବଳ ଯାଯାବର ଜାତି ନୁହନ୍ତି, ବିଭିନ୍ନ ସମୟରେ ବିଭିନ୍ନ ବୈଦେଶିକ ଜାତି ମଧ୍ୟ ଆକ୍ରମଣ ଉଦ୍ଦେଶ୍ୟରେ ଆସି ପବିତ୍ର ଭାରତଭୂମିର ବର୍ଣ୍ଣ-ଜନ୍ମନ ସଭ୍ୟତାରେ ଆକୃଷ୍ଟ ହୋଇ ତାହା ଗ୍ରହଣ କରିନେଇଛନ୍ତି ଏବଂ ହିନ୍ଦୁସମାଜର ଅବିଚ୍ଛେଦ୍ୟ ଭାବରେ ଜଡ଼ିତ ହୋଇଯାଇଛନ୍ତି । ହିନ୍ଦୁଧର୍ମରେ ପ୍ରତ୍ୟେକ ବ୍ୟକ୍ତିର ଜାତି-ଗୋତ୍ର ଥାଏ । ସେହିପରି ଯାଯାବର ବଂଶରୁ ଯେଉଁମାନେ ଜାତହେଲେ, ସେମାନଙ୍କର ଜାତି-ଗୋତ୍ରର ନାମ ହେଲା 'ଯାଯାବର' ।

କିନ୍ତୁ ରାଜଶେଖର ବ୍ରାହ୍ମଣ କିମ୍ବା କ୍ଷତ୍ରିୟ ଥିଲେ, ନିର୍ଣ୍ଣୟ କରିବା କଠିନ । ପ୍ରଫେସର ଷ୍ଟେନ୍‌କନୋ ପ୍ରମୁଖ କେତେକ ଆଲୋଚକଙ୍କ ମତରେ ସେ ଥିଲେ ବ୍ରାହ୍ମଣ । ଉକ୍ତ ମତ ସପକ୍ଷରେ ନିମ୍ନଲିଖିତ ଯୁକ୍ତିମାନ ଦିଆଯାଏ ।

---

* ଦୌର୍ଦୁକିଃ ଶୀଳବତୀ ସୂନୁଃ ।

(୧) ରାଜଶେଖର ରାଜା ମହେନ୍ଦ୍ରପାଳଙ୍କର ଉପାଧ୍ୟାୟ ଥିଲେ । ଉପାଧ୍ୟାୟକର୍ମ (ଅଧ୍ୟାପନା) ସାଧାରଣତଃ ବ୍ରାହ୍ମଣମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିଲା । (୨) ବାଳଭାରତର ପ୍ରସ୍ତାବନାସ୍ଥିତ ଏକ * ଶ୍ଳୋକରେ ରାଜଶେଖରଙ୍କୁ ଭବଭୂତିଙ୍କ ଅବତାର ବୋଲି ବର୍ଣ୍ଣନା କରାଯାଇଛି । ଭବଭୂତି ଥିଲେ- ବ୍ରାହ୍ମଣ । ତେଣୁ ତାଙ୍କର ଅବତାର ବ୍ରାହ୍ମଣ ହେବା ସ୍ୱାଭାବିକ । (୩) ବାଳରାମାୟଣରୁ ଜଣାଯାଏ, ରାଜଶେଖରଙ୍କ ପିତା ଦୁର୍ଦୁକ ଜଣେ ରାଜାଙ୍କର ମହାମାତ୍ର ଥିଲେ । ଏହି କାର୍ଯ୍ୟରେ ସାଧାରଣତଃ ବ୍ରାହ୍ମଣମାନେ ନିଯୁକ୍ତ ହେଉଥିଲେ । ଚାଣକ୍ୟ, ସାୟନ ପ୍ରଭୃତି ବ୍ରାହ୍ମଣ ମନ୍ତ୍ରୀ ହେବାର ପ୍ରସିଦ୍ଧି ଅଛି ।

କିନ୍ତୁ ଉପର୍ଯ୍ୟୁକ୍ତ ଯୁକ୍ତିପୁଞ୍ଜ ଅକାଟ୍ୟ ନୁହେଁ । (୧) କ୍ଷତ୍ରିୟମାନେ ଉପାଧ୍ୟାୟ ହେବାକୁ ଅଧିକାରୀ ନୁହନ୍ତି, ଏହା କୌଣସି ଧର୍ମଶାସ୍ତ୍ରରେ ଉଲ୍ଲେଖ ହୋଇନାହିଁ । (୨) ବ୍ରାହ୍ମଣଙ୍କ ଅବତାର ନିଶ୍ଚୟ ବ୍ରାହ୍ମଣ ଏହା ଠିକ୍ ନୁହେଁ । ସ୍ୱୟଂ ଭଗବାନ ବିଭିନ୍ନ ଜାତିରେ ଅବତାର ଗ୍ରହଣ କରିଛନ୍ତି । (୩) ମହାମାତ୍ର ପଦ କେବଳ ବ୍ରାହ୍ମଣମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ନ ଥିଲା । ବ୍ରାହ୍ମଣମାନେ କ୍ଷତ୍ରିୟୋଚିତ ସେନାପତି ପଦରେ ଏବଂ କ୍ଷତ୍ରିୟମାନେ ବ୍ରାହ୍ମଣୋଚିତ ମନ୍ତ୍ରିପଦରେ ଅଧିଷ୍ଠିତ ହୋଇଥିବାର ଐତିହାସିକ ପ୍ରମାଣ ବିରଳ ନୁହେଁ ।

ତେଣୁ ରାଜଶେଖର ବ୍ରାହ୍ମଣ ଥିଲେ ବୋଲି ନିଶ୍ଚିତଭାବେ କୁହାଯାଇ ନ ପାରେ ।

---

* ବଭୂବ ବଲ୍ମୀକଭବଃ କବିଃ ପୁରା ତତଃ ପ୍ରପେଦେ ଭୁବି ଭର୍ତ୍ତୃମେଣ୍ଠତାମ୍ । ସ୍ଥିତଃ ପୁନର୍ଯୋ ଭବଭୂତିରେଖୟା ସ ବର୍ତ୍ତତେ ସମ୍ପ୍ରତି ରାଜଶେଖରଃ ॥'

ପଶ୍ଚାନ୍ତରେ ଅନୁମାନ କରାଯାଏ, ରାଜଶେଖର ଥିଲେ କ୍ଷତ୍ରିୟ, କାରଣ, ସେ କ୍ଷତ୍ରିୟକନ୍ୟା ଅବନ୍ତୀସୁନ୍ଦରୀଙ୍କୁ ବିବାହ କରିଥିଲେ । କିନ୍ତୁ ଏ ଅନୁମାନ ମଧ୍ୟ ବଳିଷ୍ଠ ନୁହେଁ । କାରଣ, ଉଚ୍ଚକୁଳର ପୁରୁଷ ଅପେକ୍ଷାକୃତ ନିମ୍ନକୁଳରୁ ପତ୍ନୀଗ୍ରହଣ କରିବାର ବିଧି ହିନ୍ଦୁଶାସ୍ତ୍ରସମ୍ମତ । ତେଣୁ ରାଜଶେଖର ବ୍ରାହ୍ମଣ ହୋଇ ମଧ୍ୟ କ୍ଷତ୍ରିୟ-କନ୍ୟା ବିବାହ କରିପାରିଥିବେ ।

ଯଦ୍ୟପି ଏ ସମ୍ପର୍କରେ କୌଣସି ନିଶ୍ଚିତ ପ୍ରମାଣ ମିଳେନାହିଁ, ତଥାପି ରାଜଶେଖର ବ୍ରାହ୍ମଣ ହୋଇଥିବାର ଅନୁମାନ ଅଧିକ ବଳିଷ୍ଠ ।

ତେବେ ସେ ବ୍ରାହ୍ମଣ ବା କ୍ଷତ୍ରିୟ ଯାହା ହୁଅନ୍ତୁ, ଯାଯାବର-ବଂଶରେ ସେ ଜାତ ହୋଇଥିଲେ, ଏହା ନିଃସନ୍ଦେହ । ଆଗରୁ କୁହା-ଯାଇଛି, ଉକ୍ତ ବଂଶରେ ବଡ଼ ବଡ଼ ପଣ୍ଡିତ ଓ କବି ଜନ୍ମଗ୍ରହଣ କରି ଏହାର ଗୌରବବୃଦ୍ଧି କରିଥିଲେ । ତେଣୁ ରାଜଶେଖର ଷଡ଼ଭାଷା ପ୍ରବୀଣ, ମହାବିଦ୍ୱାନ ତଥା ମହାକବି ହେବାରେ ବଂଶ-ପରମ୍ପରାରୁ କମ୍ ସାହାଯ୍ୟ ପାଇ ନ ଥିବେ ।

———

## କର୍ପୂରମଞ୍ଜରୀର ଐତିହାସିକ ମୂଲ୍ୟ

ପ୍ରାଚୀନ ଭାରତର ନାଟ୍ୟସାହିତ୍ୟର ବିବର୍ତ୍ତନରେ କର୍ପୂର-ମଞ୍ଜରୀର ମହତ୍ତ୍ୱ କମ୍ ନୁହେଁ । ଏହି ନାଟିକାରୁ ସେତେବେଳର ନାଟ୍ୟକଳା ସମ୍ବନ୍ଧରେ ଅନେକ ତଥ୍ୟ ଜଣାପଡ଼େ । ସେତେବେଳେ ନାଟକର ପ୍ରସ୍ତାବନାରେ * ଧ୍ରୁବାଗୀତ ପ୍ରଚଳିତ ଥିଲା । ଅଭିନୟ

* ଭରତଙ୍କ ନାଟ୍ୟଶାସ୍ତ୍ରରେ ଧ୍ରୁବାଗୀତ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରାଯାଇଅଛି ।

ଆରମ୍ଭରେ କଞ୍ଚୁକୀବର୍ଗ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ ରହୁଥିଲେ । ବଂଶୀ, ବୀଣା, ମୃଦଙ୍ଗ, କାଂସ୍ୟକରତାଳ ପ୍ରଭୃତି ବାଦ୍ୟଯନ୍ତ୍ର ବ୍ୟବହୃତ ହେଉଥିଲା । ଉନ୍ନତ ଧରଣର ରଙ୍ଗମଞ୍ଚର ବ୍ୟବସ୍ଥା ଥିଲା । କର୍ପୂରମଞ୍ଜରୀର ଝୁଲଣ ଦୃଶ୍ୟ ଏହାର ପ୍ରମାଣ । ଚତୁର୍ଥ ଯବନିକା-ନ୍ତରର ନୃତ୍ୟଦୃଶ୍ୟରୁ ଜଣାଯାଏ, ସେତେବେଳେ ଅଭିନୟରେ ନୃତ୍ୟର ବ୍ୟବସ୍ଥା ଥିଲା । ନର୍ତ୍ତକୀମାନେ ବିଭିନ୍ନ ବେଶ ଧାରଣ କରି ଦଣ୍ଡରାସ, ଯୋଗିନୀନୃତ୍ୟ, ଶ୍ମଶାନ ଅଭିନୟ ପ୍ରଭୃତି ନାନାପ୍ରକାର ଅଦ୍ଭୁତ ନୃତ୍ୟ ପ୍ରଦର୍ଶନ କରୁଥିଲେ । ନାଟ୍ୟଶାସ୍ତ୍ରର ନିୟମ ଅନୁସାରେ ରଙ୍ଗମଞ୍ଚରେ ଯୁଦ୍ଧ, ମୃତ୍ୟୁ, ବିବାହ ପ୍ରଭୃତି କେତେଗୋଟି ଦୃଶ୍ୟ ପ୍ରଦର୍ଶିତ ହେବା ଅନୁଚିତ । ମାତ୍ର କର୍ପୂରମଞ୍ଜରୀରେ ବିବାହଦୃଶ୍ୟ ପ୍ରୟୋଗ କରାଯାଇଅଛି । ସମ୍ପୂର୍ଣ୍ଣ ନାଟିକାଟି ପ୍ରାକୃତଭାଷାରେ ଲେଖି ଏବଂ ରଙ୍ଗମଞ୍ଚରେ ବିବାହଦୃଶ୍ୟ ପ୍ରୟୋଗ କରି ରାଜଶେଖର ଅନାବଶ୍ୟକ ପରମ୍ପରାକୁ ଭାଙ୍ଗିଦେଇଛନ୍ତି । ଏହି ନାଟିକାର ପ୍ରସ୍ତାବନାରେ 'ସୂତ୍ରଧାର' ପରିବର୍ତ୍ତେ 'ସ୍ଥାପକ'ର ବ୍ୟବହାର କରାଯାଇଛି ବୋଲି ଷ୍ଟେନ୍‌କନୋ ପ୍ରମୁଖ ଆଲୋଚକ-ମାନଙ୍କର ମତ । ମାତ୍ର ଅଧିକାଂଶ କର୍ପୂରମଞ୍ଜରୀ ପୋଥିରେ 'ସ୍ଥାପକ' ବ୍ୟବହୃତ ହୋଇଥିବାର ଦେଖାଯାଏ ନାହିଁ ।

ତଦାନୀନ୍ତନ ତନ୍ତ୍ରଧର୍ମ ସମ୍ବନ୍ଧରେ କେତେକ ତଥ୍ୟ ଏଥିରୁ ଅବଗତ ହୁଏ । ସନ୍ନ୍ୟାସଧର୍ମର ପ୍ରବଳ ପ୍ରତିଦ୍ୱନ୍ଦୀରୂପେ ତନ୍ତ୍ରମନ୍ତ୍ର ପ୍ରସାର ଲାଭ କରିଥିଲା । ଏହି ମତରେ ମୁକ୍ତିପାଇଁ ସାଂସାରିକ ସୁଖ-ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାରୁ ପଡ଼ୁ ନ ଥିଲା । ଅଧିକନ୍ତୁ ସୁଖସମ୍ଭୋଗ ଅତ୍ୟାବଶ୍ୟକ ବୋଲି ବିବେଚିତ ହେଉଥିଲା । ଭୈରବାନନ୍ଦଙ୍କ ଉକ୍ତି ବିଶ୍ଳେଷଣ କଲେ ଏହାର ପ୍ରମାଣ ମିଳେ । (ଭୈରବାନନ୍ଦଙ୍କ ଚରିତ୍ର ଚିତ୍ରଣ ଦେଖନ୍ତୁ) ।

କର୍ପୂରମଞ୍ଜରୀରେ ସେ କାଳର ବିଭିନ୍ନ ସାମାଜିକ ସ୍ଥିତିମାନ ମଧ୍ୟ ପ୍ରତିଫଳିତ । ରାଜତନ୍ତ୍ରର ପ୍ରବଳ ପ୍ରଭାବ ଯୋଗୁଁ ରାଜଭବନ ଅପାର ବିଭବରେ ପରିପୂର୍ଣ୍ଣ ଥିଲା । ଅନ୍ତଃପୁରରେ ଆନନ୍ଦ-ଉତ୍ସବର ସ୍ରୋତ ବହୁଥିଲା ଏବଂ ଦାସଦାସୀଗଣ ବିଭିନ୍ନ କର୍ମରେ ନିଯୁକ୍ତ ଥିଲେ । ନାରୀମାନେ କୂର୍ପାସକ (କାଞ୍ଚୁଲା) ଏବଂ ଉତ୍ତରୀୟ ବ୍ୟବହାର କରୁଥିଲେ । ନୂପୁର, ଅଣ୍ଟାସୂତା, ବଳୟ, ମୁକ୍ତାହାର, କୁଣ୍ଡଳ ପ୍ରଭୃତି ଅଳଙ୍କାରରେ ଏବଂ ତିଳକ, କୁଙ୍କୁମ, ଓଷ୍ଠଲେପ, ଅଞ୍ଜନ ପ୍ରଭୃତି ବିଲେପନ-ଦ୍ରବ୍ୟରେ ଭୂଷିତ ହେଉଥିଲେ । ଦେବପୂଜା, ବ୍ରତ, ଉପାସନାଦିର ବହୁଳ ପ୍ରଚଳନ ଥିଲା । ହିନ୍ଦୋଳକ ନାମକ ଏକ-ପ୍ରକାର ଉତ୍ସବ ପାଳିତ ହେଉଥିଲା ଏବଂ ତାହା ଚତୁର୍ଥୀତିଥିରେ ସମାପ୍ତ ହେଉଥିଲା । କେତେକ ଉତ୍ସବରେ ସ୍ତ୍ରୀ-ପୁରୁଷମାନେ ଯନ୍ତ୍ର ଜଳରେ ପରସ୍ପରକୁ ସିକ୍ତ କରୁଥିଲେ । ତାମ୍ରପର୍ଣ୍ଣୀ ନଦୀମୁହାଣରୁ ମୁକ୍ତା ଉତ୍ତୋଳନ କରାଯାଉଥିଲା । ଜ୍ୟୋତିଷ*ବିଦ୍ୟାରେ ଲୋକ-ମାନଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ବିବାହରେ ଅଗ୍ନି-ଦକ୍ଷିଣ, ଅଗ୍ନିରେ ଲାଜାଞ୍ଜଳି ନିକ୍ଷେପ ଆଦି ବିଧି ପାଳିତ ହେଉଥିଲା । ସ୍ତ୍ରୀମାନେ ଉଚ୍ଚଶିକ୍ଷାପ୍ରାପ୍ତ ହେଉଥିଲେ ଏବଂ କାବ୍ୟକବିତା ରଚନାରେ ମଧ୍ୟ କୃତିତ୍ୱ ଲାଭ କରୁଥିଲେ । ଏହିପରି କେତେକ ସାମାଜିକ ପ୍ରତିଚ୍ଛବି ମିଳୁଥିଲେ ମଧ୍ୟ ସେ କାଳର ସାଧାରଣ ଜନ-ଜୀବନର ଚିତ୍ର ଏଥିରେ ଅଙ୍କିତ ହୋଇଥିବାର ଦେଖାଯାଏ ନାହିଁ ।

---

* ଘନସାରମଞ୍ଜରୀଙ୍କୁ ଯେ ବିବାହ କରିବେ, ସେ ଚକ୍ରବର୍ତ୍ତୀ ରାଜା ହେବେ ବୋଲି ଜ୍ୟୋତିଷୀମାନେ କହିଥିଲେ ।

# କର୍ପୂରମଞ୍ଜରୀର ସାହିତ୍ୟିକ ମୂଲ୍ୟ

ପ୍ରାଚୀନ ନାଟକଗୁଡ଼ିକର ଏକ ପ୍ରଧାନ ବିଶେଷତ୍ୱ ଯେ ସେଥିରେ ନାଟକଧର୍ମ ଓ କାବ୍ୟଧର୍ମ ପ୍ରାୟ ସମାନଭାବରେ ନିହିତ । ଅଳଙ୍କାରଶାସ୍ତ୍ର ଅନୁସାରେ ନାଟକକୁ ଦୃଶ୍ୟକାବ୍ୟ ବୋଲାଯାଏ । ଏହା ଦୃଶ୍ୟ ହେଲେ ମଧ୍ୟ କାବ୍ୟ । ତେଣୁ ବର୍ଣ୍ଣନାବିଳାସ, ଉକ୍ତି-ବୈଚିତ୍ର୍ୟ, ଅଳଙ୍କାରଯୋଜନା, ବିଭିନ୍ନ ରୀତି ଓ ଛନ୍ଦମାଧୁର୍ଯ୍ୟ ପ୍ରଭୃତି କାବ୍ୟଧର୍ମଗୁଡ଼ିକୁ ନାଟକରେ ସ୍ଥାନ ଦେବାପାଇଁ ପ୍ରାଚୀନ ନାଟ୍ୟକାର-ମାନେ ଚେଷ୍ଟିତ ଥିଲେ । ଏଥିପାଇଁ ନାଟ୍ୟକାରଙ୍କୁ 'କବି' ଆଖ୍ୟା ମଧ୍ୟ ଦିଆଯାଉଥିଲା । କିନ୍ତୁ ବର୍ତ୍ତମାନର ନାଟକ କାବ୍ୟଧର୍ମଠାରୁ ବହୁ ଦୂରରେ । ତେଣୁ ଆଧୁନିକ ପାଠକପାଠିକାମାନେ ପ୍ରାଚୀନ ନାଟକର ସ୍ୱରୂପ ଦେଖି ବିସ୍ମିତ ହୁଅନ୍ତି । ବିସ୍ମିତ ହେବା ସ୍ୱାଭାବିକ । ଆଧୁନିକ ସାହିତ୍ୟର ସ୍ୱରୂପ ଯାହା, ଶହ ଶହ ବର୍ଷ ତଳର ସାହିତ୍ୟରୁ ତାହା ଆଶା କରିବା ବିଡ଼ମ୍ବନା ମାତ୍ର । ଏପରି କି ପଚାଶ ବର୍ଷ ପୂର୍ବର ସାହିତ୍ୟରୁ ମଧ୍ୟ ତାହା ଆଶା କରିଯାଇ ନ ପାରେ ।

କର୍ପୂରମଞ୍ଜରୀରେ କାବ୍ୟଧର୍ମ ଯଥେଷ୍ଟ ଅଛି । ପ୍ରସ୍ତାବନାର ନାନ୍ଦୀଗାନ ଅନୁସାରେ ଏଥିରେ ବିଭିନ୍ନ 'ରୀତି'ର ଯଥୋଚିତ ସମାବେଶ କରିଯାଇଛି । ବିଶେଷତଃ ପାଞ୍ଚାଳୀରୀତିର ରଚନା ଏଥିରେ ବହୁଳ ପରିମାଣରେ ପରିଦୃଷ୍ଟ ହୁଏ । ତେଣୁ ଏହାର ଅଧିକାଂଶ ଶ୍ଳୋକ ଅଳ୍ପ ସମାସଯୁକ୍ତ, ଲଳିତ ତଥା ମଧୁର ହୋଇଛି । ପ୍ରାକୃତଭାଷା ଜନସାଧାରଣଙ୍କ ଭାଷା । ଅବଶ୍ୟ ସଂସ୍କୃତ ଏହାକୁ ଖୁବ୍ ପ୍ରଭାବିତ କରିଛି । ତଥାପି ସେ କାଳର ଲୋକମାନଙ୍କୁ ପ୍ରାକୃତ ରଚନା ସଂସ୍କୃତ ଅପେକ୍ଷା ଅଧିକ ସରଳ ଓ କୋମଳ ହୋଇଥିବ ।

କର୍ପୂରମଞ୍ଜରୀର ପ୍ରସ୍ତାବନାରେ ପାରିପାର୍ଶ୍ୱିକଙ୍କ ମୁଖରେ ଏହା ବ୍ୟକ୍ତ କରାଯାଇଛି—ପୁରୁଷାଃ ସଂସ୍କୃତବନ୍ଧାଃ ପ୍ରାକୃତବନ୍ଧୋଽପି ଭବତି ସୁକୁମାରଃ, ପୁରୁଷମହିଳାନାଂ ଯାବଦିହାନ୍ତରଂ ତାବତ୍ ତେଷୁ । ଅର୍ଥାତ୍ ସଂସ୍କୃତଭାଷାର ରଚନା କର୍କଶ, କିନ୍ତୁ ପ୍ରାକୃତ ଭାଷାର ରଚନା କୋମଳ ହୁଏ । ପୁରୁଷ ଓ ମହିଳାଙ୍କ ମଧ୍ୟରେ ଯେପରି ପାର୍ଥକ୍ୟ, ସଂସ୍କୃତ ଓ ପ୍ରାକୃତଭାଷାର ରଚନା ମଧ୍ୟରେ ସେହିପରି ପାର୍ଥକ୍ୟ ।

ବର୍ଣ୍ଣନାବୈଭବ କର୍ପୂରମଞ୍ଜରୀରେ ପରିପୂର୍ଣ୍ଣ । ବସନ୍ତଋତୁ, ସନ୍ଧ୍ୟା, ଚନ୍ଦ୍ରୋଦୟ, ନାରୀସୌନ୍ଦର୍ଯ୍ୟ, ବିରହ, ଝୁଲଣ, ବୃକ୍ଷଦୋହଦ ପ୍ରଭୃତିର ବର୍ଣ୍ଣନା କବିଙ୍କର ଉନ୍ନତ ସୃଷ୍ଟି କଳ୍ପନାର ପରିଚୟ ଦିଏ । ବିଶେଷଭାବେ କର୍ପୂରମଞ୍ଜରୀଙ୍କର ସୌନ୍ଦର୍ଯ୍ୟବର୍ଣ୍ଣନା ସହୃଦୟ କାବ୍ୟରସିକଙ୍କର ହୃଦୟ ବିମୁଗ୍ଧ କରେ ।

"ଏକେନ ପାଣି ନଳିନେନ ନିବେଶୟନ୍ତୀ
ବସ୍ତ୍ରାଞ୍ଚଳଂ ଘନସ୍ତନ ସ୍ରଂସମାନମ୍ ।
ଚିତ୍ରେ ନିଖ୍ୟତେ ନ କଯାପି ସଯନ୍ତୀ
ଅନ୍ୟେନ ଚଙ୍କ୍ରମଣଚଣ୍ଡଳିତଂ କଟିବସ୍ତ୍ରମ୍ ॥"

[ପୃଥୁଳ ପୟୋଧର ଉପରୁ ଖସିପଡ଼ୁଥିବା ବସ୍ତ୍ରକୁ ଏକ ହାତରେ ତା' ଉପରେ ରଖୁଛି । ବାରମ୍ବାର ପଦକ୍ଷେପ ଯୋଗୁଁ କଟିବସ୍ତ୍ର ଢିଲା ହୋଇଯାଉଛି । ତେଣୁ ଅନ୍ୟ ହାତରେ ତାହାକୁ ସମ୍ଭାଳି ଧରୁଛି । ଏହାର ଏହି ଅବସ୍ଥାର ରୂପ କାହା ହୃଦୟକୁ ପ୍ରଭାବିତ କରୁନାହିଁ ?]

"ସନ୍ଦେଶ୍ୟ ମଧ୍ୟଂ ନିବିଡ଼ବଳିକଂ ତନ୍ମୁଷ୍ଟ୍ୟାପି ଗ୍ରାହ୍ୟମ୍
ଯୋ ବାହୁଭ୍ୟାଂ ରମଣଫଳକଂ ବେଷ୍ଟିତୁଂ ଯାତି ଦ୍ୱାଭ୍ୟାମ୍ ।
ନେତ୍ରକ୍ଷେତ୍ରଂ ତରୁଣୀପ୍ରସୃତି ଯାସ୍ୟମାନୋପମାନମ୍
ତତ୍ପ୍ରତ୍ୟକ୍ଷଂ ମୟା ବଳୟିତୁଂ ଯାତ୍ୟେଷା ନ ଚେତ୍ତେ ॥"

[ ମନେହୁଏ, ଏହାର ନିବିଡ଼ଯୁକ୍ତ କଟୀ ଗୋଟିଏ ଶିଶୁର ମୁଠାଭିତରେ ମଧ୍ୟ ରହିପାରିବ । ନିତମ୍ବକୁ ଦୁଇ ବାହୁରେ ମଧ୍ୟ ବେଷ୍ଟନ କରି ହେବନାହିଁ । ଚକ୍ଷୁର ବିଶାଳତାକୁ ସୃଷ୍ଟିଗଣ୍ଡ ସହିତ ତୁଳନା ଦିଆଯାଇ ପାରିବ । ମୁଁ ଏହାକୁ ଆଖି ଆଗରେ ଦେଖୁଛି, ତଥାପି ଏହାର ସୌନ୍ଦର୍ଯ୍ୟକୁ ହୃଦୟରେ ଧାରଣ କରିବାକୁ ସମର୍ଥ ହେଉନାହିଁ ।]

ଏହିପରି ବର୍ଣ୍ଣନାଗୁଡ଼ିକ ପାଠକଲେ ଆଖି ଆଗରେ ଏକ ଅପରୂପ ଲାବଣ୍ୟମୟୀ ନାୟିକାର ଛବି ଉଦ୍ଭାସିତ ହୋଇଉଠେ ।

କାବ୍ୟ ହେଲେ ମଧ୍ୟ ନାଟକ କାବ୍ୟଠାରୁ ପୃଥକ୍ । ତେଣୁ ନାଟକରେ କୌଣସି ବିଷୟର ବହୁଳ ଅବାଞ୍ଛନୀୟ । ରାଜଶେଖର ଏଥିପ୍ରତି ଉପଯୁକ୍ତ ଧ୍ୟାନ ଦେଇନାହାନ୍ତି । ଅଭିଜ୍ଞାନଶାକୁନ୍ତଳରେ କାଳିଦାସ ଯେପରି ସ୍ଥାନେ ସ୍ଥାନେ ବର୍ଣ୍ଣନା ପରିବର୍ତ୍ତେ କେବଳ ସୂଚନା ଦେଇଛନ୍ତି ଏବଂ ସେହି ସୂଚନାମାନ ଉଚ୍ଚକୋଟୀର ବର୍ଣ୍ଣନାକୁ ମଧ୍ୟ ବଳାଯାଇଛି, କର୍ପୂରମଞ୍ଜରୀରେ ସେ ବିଶେଷଜ୍ଞ ଦୃଷ୍ଟିଗୋଚର ହୁଏ ନାହିଁ ।

ଏହି ନାଟିକାରେ ଶାର୍ଦ୍ଦୂଳବିକ୍ରୀଡ଼ିତ, ବସନ୍ତତିଳକ, ଶିଖରିଣୀ, ସ୍ରଗ୍ଧରା, ବଂଶସ୍ଥ, ଇନ୍ଦ୍ରବଜ୍ରା, ଉପଜାତି, ଉପଗୀତି ପ୍ରଭୃତି ବିଭିନ୍ନ ଛନ୍ଦର ମଞ୍ଜୁଳ ପ୍ରୟୋଗ କରାଯାଇଛି । ଉଦାହରଣ

ସ୍ୱରୂପ, ୧ମ ଜବନକାନ୍ତରର ୧, ୧୩, ୧୬, ୧୭, ୧୮, ୨୦, ୨୬, ୨୯, ୩୨, ୩୫; ୨ୟ ଜବନକାନ୍ତରର ୧, ୩, ୮, ୨୭, ୨୯, ୪୬; ୩ୟ ଜବନକାନ୍ତରର ୧, ୩, ୨୫, ୨୭ ଏବଂ ୪ର୍ଥ ଜବନକାନ୍ତରର ୩, ୮, ୨୨, ଶ୍ଳୋକଗୁଡ଼ିକ ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦରେ ଲିଖିତ । ଏହାପରେ ଅନ୍ୟାନ୍ୟ ଛନ୍ଦର ଶ୍ଳୋକଗୁଡ଼ିକ ହୃଦ୍ୟ ହୋଇଅଛି । କିନ୍ତୁ ରାଜଶେଖରଙ୍କର ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦରେ ଅଧିକ ପଟୁତା ଉଲ୍ଲେଖ ଯୋଗ୍ୟ । କ୍ଷେମେନ୍ଦ୍ରଙ୍କ ପ୍ରଣୀତ ସୁବୃତ୍ତତିଳକରେ ତାଙ୍କର ଉକ୍ତ ଛନ୍ଦପଟୁତା ସମ୍ବନ୍ଧରେ ଉଲ୍ଲେଖ ଅଛି –

"ଶାର୍ଦ୍ଦୂଳବିକ୍ରୀଡ଼ିତୈରେବ ପ୍ରଖ୍ୟାତୋ ରାଜଶେଖରଃ ।
ଶିଖରୀବ ପରଂ ବକ୍ରୈଃ ସୋଲ୍ଲେଖୈରୁଚ୍ଚଶେଖରଃ ॥"

ଏହି ନାଟିକାର ପ୍ରାୟ ପ୍ରତ୍ୟେକ ସ୍ଥଳରେ କୌଣସି ନା କୌଣସି ଅଳଙ୍କାର ନିହିତ । ଏ ବିଷୟରେ ପୃଥକ୍ ଆଲୋଚନା କରିବା ଅନାବଶ୍ୟକ । କେବଳ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ ।

''ଜାତଂ କୁଙ୍କୁମପଙ୍କଲିପ୍ତମହାରାଷ୍ଟ୍ରୀ ଗଣ୍ଡପ୍ରଭଂ ଚମ୍ପକମ୍
ସ୍ତୋକାବର୍ତ୍ତିତ ଦୁଗ୍ଧ ମୁଗ୍ଧ କୁସୁମା ପ୍ରୋତ୍ଫୁଲ୍ଲିତା ମଲ୍ଲିକା ।
ମୂଳେ ଶ୍ୟାମଳମଗ୍ରଲଗ୍ନଭ୍ରମରଂ ଲକ୍ଷ୍ୟତେ କିଂଶୁକମ୍
ପୀୟୂମାନଂ ମଧୁପାଭ୍ୟାଂହାଭ୍ୟାମପି ଦଶାନ୍ତରେଷୁ ଲଗାଭ୍ୟାମିବ॥

[ଚମ୍ପକପୁଷ୍ପ ମହାରାଷ୍ଟ୍ରୀ ସ୍ତ୍ରୀମାନଙ୍କର କୁଙ୍କୁମବୋଳା ଗଣ୍ଡସ୍ଥଳ ପରି ଦିଶିଲାଣି । ମଲ୍ଲୀଲତାରେ ଅଳ୍ପମଥିତ ଦୁଗ୍ଧ ପରି ସୁନ୍ଦର ପୁଷ୍ପମାନ ବିକଶିତ ହେଲାଣି । ପଳାଶଫୁଲର ମୂଳ ଶ୍ୟାମଳ ଦିଶୁଥିବାରୁ ଏବଂ ଅଗରେ ଭ୍ରମର ବସିଥିବାରୁ ବୋଧହେଉଛି;

ସତେ ଯେପରି ଦୁଇଟି ଭ୍ରମର ଦୁଇ ପାଖରେ ବସି ମଧୁପାନ କରୁଛନ୍ତି । ]

ଉକ୍ତ ବର୍ଣ୍ଣନାଟି ଉପମା, ଉତ୍ପ୍ରେକ୍ଷା ଓ ସ୍ୱଭାବୋକ୍ତି ଅଳଙ୍କାରଦ୍ୱାରା ଅତ୍ୟନ୍ତ ରମଣୀୟ ହୋଇଅଛି ।

ଏହି ନାଟିକାର ମୁଖ୍ୟରସ ଶୃଙ୍ଗାର । ଅଙ୍ଗରସ ଅଦ୍ଭୁତ, ହାସ୍ୟ ଏବଂ ଭୟାନକ । ରାଜା ଚନ୍ଦ୍ରପାଳ ଓ କର୍ପୂରମଞ୍ଜରୀଙ୍କର ପ୍ରେମାନୁରାଗ, ବିରହ ଏବଂ ମିଳନ ନାଟିକାଟିର ବିଷୟବସ୍ତୁ । ମୁଖ୍ୟ କଥା ସହିତ କୌଣସି ଉପକଥାର ସଂଯୋଗ ନାହିଁ । ଏଥିରେ ଆଦ୍ୟପ୍ରାନ୍ତ ଶୃଙ୍ଗାରରସର ସ୍ରୋତ ପ୍ରବାହିତ । ବିଦୂଷକଙ୍କ ଦ୍ୱାରା ହାସ୍ୟରସର ପରିବେଷଣ କରାଯାଇଛି । ତାଙ୍କର ଅଦ୍ଭୁତ ସ୍ୱପ୍ନ-ବୃତ୍ତାନ୍ତ ହାସ୍ୟ ଉଦ୍ରେକ କରିବା ସଙ୍ଗେ ସଙ୍ଗେ ଶୃଙ୍ଗାରର ମଧ୍ୟ ପରିପୁଷ୍ଟି ସାଧନ କରେ । ମହାଯୋଗୀ ଭୈରବାନନ୍ଦଙ୍କର ଅସାଧ୍ୟ ସାଧନ ଅଦ୍ଭୁତ ରସର ଏବଂ ରାଣୀ ବିଭ୍ରମଲେଖା କର୍ପୂରମଞ୍ଜରୀଙ୍କ ବାସଗୃହର ଚତୁପାଖରେ ଯେଉଁ କଠୋର ପହରା ବ୍ୟବସ୍ଥା କରିଥିଲେ, ବିଦୁଷକଙ୍କଦ୍ୱାରା ତାହାର ବର୍ଣ୍ଣନା ଭୟାନକ ରସର ସଞ୍ଚାର କରେ ।

ଉକ୍ତ ନାଟିକାରେ ସ୍ତ୍ରୀପୁରୁଷଙ୍କ ପ୍ରେମ ସମ୍ବନ୍ଧରେ ଏକ ସୁନ୍ଦର ଆଲୋଚନା କରାଯାଇଛି । ବିଦୁଷକଙ୍କ ପ୍ରଶ୍ନର ଉତ୍ତରରେ ରାଜା ଦାମ୍ପତ୍ୟପ୍ରେମର ଏକ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦେଇଛନ୍ତି । ପ୍ରେମର ସ୍ୱରୂପ ସମ୍ବନ୍ଧରେ ତାଙ୍କର ନିମ୍ନଲିଖିତ ଉକ୍ତିଗୁଡିକ ଯଥାର୍ଥ ।

“ତସ୍ମିନ୍ ବିକଳ୍ପଘଟନାହି କଳଙ୍କମୁକ୍ତାଃ
ଆତ୍ମନଃ ସରଳଭୂମେଷୁ ଭବଃ ।

ଏକୈକସ୍ୟ ପ୍ରସରଦ୍ ରସପ୍ରବାହଃ
ଶୃଙ୍ଗାର ବର୍ଦ୍ଧିତ ମନୋଭବ ଦତ୍ତସାରଃ ॥"

[ପ୍ରେମରେ ପରସ୍ପରର ଆତ୍ମଗତ ଭାବସରଳତାପ୍ରାପ୍ତ ହୁଏ: ବିଧି-ନିଷେଧ, ହାନି ଲାଭ ପ୍ରଭୃତି ବିଷୟର ସଂଶୟ ଦୂର ହୋଇଯାଏ, ଉଭୟଙ୍କର ଆନନ୍ଦ-ରସର ପ୍ରବାହ ବଢ଼ିବାରେ ଲାଗେ; ଆଉ ମଧ୍ୟ ପ୍ରୀତିକାମନାଦ୍ୱାରା ସେହି ଭାବ ଅଧିକ ପରିପୁଷ୍ଟ ହୁଏ । ]

"ନୂନଂ ହ୍ୱାବିହ ପ୍ରଜାପତୀ ଜଗତି
ଯୌ ଦେହନିର୍ମାଣ ଯୌବନ ଦାନ ଦକ୍ଷୌ ।
ଏକୋ ଘଟୟତି ପ୍ରଥମଂ କୁମାରୀଣାମଙ୍ଗଂ
ଉତ୍କୀର୍ଯ୍ୟ ପ୍ରକଟୟତି ପୁନର୍ଦ୍ୱିତୀୟଃ ॥"

[ଏ ସଂସାରରେ ବିଧାତା ଦୁଇ ଜଣ । ଜଣେ ଦେହ ନିର୍ମାଣ କରିବାରେ ଏବଂ ଆଉ ଜଣେ ଯୌବନ ଦେବାରେ ଦକ୍ଷ । ପ୍ରଥମ ଜଣକ କୁମାରୀମାନଙ୍କର ଶରୀର ଗଠନ କରେ ଏବଂ ଦ୍ୱିତୀୟ ଜଣକ ଶରୀରରେ ଯୌବନର ବିକାଶ କରେ । ]

ତୃତୀୟ ଜବନିକାନ୍ତରରେ କର୍ପୂରମଞ୍ଜରୀଙ୍କ ଦ୍ୱାରା ରଚିତ ଚନ୍ଦ୍ର-ବର୍ଣ୍ଣନାର ପ୍ରଶଂସା କରିବାକୁ ଯାଇ ରାଜା କହିଛନ୍ତି—"ଅହୋ ! କର୍ପୂରମଞ୍ଜର୍ଯ୍ୟା ଅଭିନବାର୍ଥଦର୍ଶନମ୍, ରମଣୀୟଃ ଶବ୍ଦଃ, ଉକ୍ତି ବିଚିତ୍ରତା, ରସନିଷ୍ୟନ୍ଦଶ୍ଚ ।" (ବାଃ ! କର୍ପୂରମଞ୍ଜରୀଙ୍କର ଅର୍ଥ ଅଭିନବ, ଶବ୍ଦ ରମଣୀୟ, ଉକ୍ତି ବିଚିତ୍ର ଆଉ ରସ ବି ପ୍ରଚୁର !) ଏହି ଉକ୍ତି କର୍ପୂରମଞ୍ଜରୀନାଟିକା ପ୍ରତି ମଧ୍ୟ ପୂର୍ଣ୍ଣରୂପେ ପ୍ରଯୁଜ୍ୟ ହୋଇପାରେ ।

— —

# କର୍ପୂରମଞ୍ଜରୀର ଭାଷା

ସଂସ୍କୃତ ଦୃଶ୍ୟକାବ୍ୟମାନଙ୍କରେ ଉଚ୍ଚଶ୍ରେଣୀର ଚରିତ୍ର ସଂସ୍କୃତ ଭାଷା ଏବଂ ଇତର ଶ୍ରେଣୀର ଚରିତ୍ର ଓ ସମସ୍ତ ସ୍ତ୍ରୀଚରିତ୍ର ପ୍ରାକୃତ-ଭାଷା ବ୍ୟବହାର କରନ୍ତି । ଏହା ଅଳଙ୍କାରଶାସ୍ତ୍ରର ନିୟମ । କିନ୍ତୁ କର୍ପୂରମଞ୍ଜରୀ ଆଦ୍ୟପ୍ରାନ୍ତ ପ୍ରାକୃତଭାଷାରେ ଲିଖିତ । ଏଥିରେ ଉଚ୍ଚ, ନିମ୍ନ ସମସ୍ତ ଚରିତ୍ରଙ୍କର ଭାଷା ପ୍ରାକୃତ ଏବଂ ଏହି ପ୍ରାକୃତ ହେଉଛି ଶୌରସେନୀ । ଶୌରସେନୀ ପ୍ରାକୃତର ସ୍ୱରୂପ ବର୍ଣ୍ଣାଇବା ପୂର୍ବରୁ ପ୍ରଥମେ ଭାରତୀୟ ଆର୍ଯ୍ୟଭାଷାଗୋଷ୍ଠୀରେ ଏହାର ସ୍ଥାନ ସମ୍ବନ୍ଧରେ ସଂକ୍ଷିପ୍ତ ଆଲୋଚନା କରିବା ଏଠାରେ ଅପ୍ରାସଙ୍ଗିକ ହେବନାହିଁ ।

ଅତି ପ୍ରାଚୀନ କାଳରେ ଭାରତକୁ ଆଗତ ଆର୍ଯ୍ୟମାନେ ଯେଉଁ ଭାଷା ବ୍ୟବହାର କରୁଥିଲେ, ତାହାର ନାମ ବୈଦିକଭାଷା । ଏହି ଭାଷାରେ ବେଦ ରଚିତ ବୋଲି ଏହାର ଏପରି ନାମକରଣ ହୋଇଅଛି । କିନ୍ତୁ ବେଦର ଭାଷାରେ ଆର୍ଯ୍ୟମାନଙ୍କ କଥିତ ଭାଷାର ପୂର୍ଣ୍ଣସ୍ୱରୂପ ମିଳେନାହିଁ । କାରଣ, ଏହି ଭାଷା ସେମାନଙ୍କ କଥିତ ଭାଷାର ସାହିତ୍ୟିକରୂପ । କୌଣସି ଭାଷାର କଥିତରୂପ ଓ ସାହିତ୍ୟିକ ରୂପ ମଧ୍ୟରେ ପାର୍ଥକ୍ୟ ରହିବା ସ୍ୱାଭାବିକ । ଋଗ୍‌ବେଦ ଆର୍ଯ୍ୟ-ମାନଙ୍କର ପ୍ରଥମ ରଚନା । ତେଣୁ ଏହାର ଭାଷା ସବୁଠାରୁ ପ୍ରାଚୀନ । ତଥାପି ଏଥିରେ ପ୍ରାଚୀନତା ନଷ୍ଟ ହୋଇଥିବାର ସମ୍ଭାବନା । କାରଣ ଏହାର ମନ୍ତ୍ରଗୁଡ଼ିକ ରଚିତ ହେବାର ବହୁକାଳ ପରେ ସଂହିତା (ଗ୍ରନ୍ଥ) ଆକାରରେ ସଂକଳିତ ହୋଇଥିଲା । ସଂକଳନ ସମୟର ଭାଷା ଅନୁସାରେ ହୁଏତ ସେଗୁଡ଼ିକର ପରିବର୍ତ୍ତନ କରାଯାଇଥିବ ।

ଆର୍ଯ୍ୟମାନଙ୍କ କଥିତ ଭାଷା ଉପରେ ପ୍ରତିଷ୍ଠିତ ସାହିତ୍ୟିକ ଭାଷାର କ୍ରମଶଃ ବିକାଶ ହେବାକୁ ଲାଗିଲା । ଏହି ବିକାଶର ବିଭିନ୍ନ ସମୟରେ ଅନ୍ୟ ତିନି ବେଦ, ବ୍ରାହ୍ମଣଗ୍ରନ୍ଥ ଓ ସୂତ୍ରଗ୍ରନ୍ଥମାନ ରଚିତ । ତେଣୁ ଏଗୁଡ଼ିକରେ ଭାଷାଗତ ପାର୍ଥକ୍ୟ ଯଥେଷ୍ଟ ପରିମାଣରେ ଦେଖାଯାଏ । ବୈଦିକ ଭାଷାର ସାହିତ୍ୟିକ ଧାରାକୁ ବୈୟାକରଣିକ-ମାନେ ଶୃଙ୍ଖଳିତ କରିବାକୁ ଚେଷ୍ଟାକଲେ ଏବଂ ଶେଷରେ ପାଣିନି ( ଖ୍ରୀ:ପୂ: ପ୍ରାୟ ୫ମ ଶତାବ୍ଦୀ ) ଙ୍କ ପ୍ରଣୀତ ବ୍ୟାକରଣଦ୍ୱାରା ଏହାକୁ ନିୟନ୍ତ୍ରିତ କଲେ । ବୈଦିକ ଭାଷାର ଉକ୍ତ ଶୃଙ୍ଖଳିତ ସାହିତ୍ୟିକରୂପ ସଂସ୍କୃତ ନାମରେ ପରିଚିତ । ସେହି ସମୟଠାରୁ ଆଜ ପର୍ଯ୍ୟନ୍ତ ସଂସ୍କୃତଭାଷା ଅପରିବର୍ତ୍ତିତ ରହିଆସିଅଛି । ଯାହା ବା ସେଥିରେ ପରିବର୍ତ୍ତନ ଘଟିଛି, ତାହା ଗତ ୨୫୦୦ ବର୍ଷ ତୁଳନାରେ କିଛି ନୁହେଁ । ଏହି ଭାଷା ବିଶାଳ, ସମୃଦ୍ଧସାହିତ୍ୟର ଅଧିକାରୀ ହୋଇ ଭାରତୀୟ ସଂସ୍କୃତି ଗଠନରେ ଖୁବ୍ ସାହାଯ୍ୟ କରିଅଛି ।

ଆର୍ଯ୍ୟମାନଙ୍କ କଥିତଭାଷାରେ ମଧ୍ୟ ପରିବର୍ତ୍ତନ ଲାଗିରହିଥିଲା କଥିତ ଭାଷାର ଦ୍ରୁତ ପରିବର୍ତ୍ତନ ସ୍ୱାଭାବିକ । ଭାରତରେ ଆର୍ଯ୍ୟ-ମାନଙ୍କର ବସତି କ୍ରମେ କ୍ରମେ ବିସ୍ତୃତ ହେବାରୁ ସେମାନଙ୍କର ଭାଷାରେ ବିଭିନ୍ନ ପାର୍ଥକ୍ୟ ଦେଖାଦେଲା । ବୁଦ୍ଧଦେବ (ଖ୍ରୀ.ପୂ. ୬ଷ୍ଠ ଶତାବ୍ଦୀ) ଜନସାଧାରଣଙ୍କ କଥିତ ଭାଷାରେ ଧର୍ମ ପ୍ରଚାର କଲେ । ଫଳରେ କଥିତ ଭାଷାମାନଙ୍କର ମହତ୍ତ୍ୱ ବଢ଼ିଗଲା ଏବଂ ସେହି ସମୟଠାରୁ କଥିତ ଭାଷାରେ ଗ୍ରନ୍ଥ ରଚନାର ସୂତ୍ରପାତ ହେଲା । ସମସ୍ତ ବୌଦ୍ଧଧର୍ମଶାସ୍ତ୍ର ଯେଉଁ ପାଲି ଭାଷାରେ ରଚିତ, ତାହା ତଦାନୀନ୍ତନ ଏକ କଥିତ ଭାଷା । ଅବଶ୍ୟ ଏହା ଏକ କଥିତଭାଷାର ସାହିତ୍ୟିକ ରୂପ । ଅଶୋକଙ୍କ ଶିଳାଲେଖଗୁଡ଼ିକ (ଖ୍ରୀ.ପୂ. ୩ୟ ଶତାବ୍ଦୀ) ମଧ୍ୟ ଜନସାଧାରଣଙ୍କ ଭାଷାରେ ଲିଖିତ । ଏଗୁଡ଼ିକରେ ତଦାନୀନ୍ତନ

କଥିତ ଭାଷାର ଚତୁଃପ୍ରକାର ରୂପ ଲକ୍ଷ୍ୟ କରାଯାଏ । ଯଥା — ଉତ୍ତର-
ପଶ୍ଚିମ, ଦକ୍ଷିଣପଶ୍ଚିମ, ପ୍ରାଚ୍ୟ ଓ ପ୍ରାଚ୍ୟମଧ୍ୟଅଞ୍ଚଳର ଭାଷା ।
ପାଲି ଦକ୍ଷିଣପଶ୍ଚିମ ଅଞ୍ଚଳର କଥିତଭାଷା ଉପରେ ପ୍ରତିଷ୍ଠିତ ବୋଲି
ଭାଷାତତ୍ତ୍ୱବିତ୍‌ମାନଙ୍କର ମତ ।

ଏଠାରେ ସ୍ମରଣ ରଖିବାର କଥା ଯେ ଲୋକପ୍ରଚଳିତଭାଷା
ସାହିତ୍ୟରେ ବ୍ୟବହୃତ ହେଲାବେଳେ କେତେକ ପରିମାଣରେ ଭିନ୍ନ
ରୂପ ଧାରଣ କରେ ଏବଂ ଏହା ହିଁ ସାହିତ୍ୟିକ ଭାଷା । ସାହିତ୍ୟିକ
ଭାଷାରେ ପରିବର୍ତ୍ତନ ଘଟେନାହିଁ ଏବଂ ଏହା ଶୃଙ୍ଖଳାବଦ୍ଧ ହେବାରୁ
କଥିତଭାଷାଠାରୁ କ୍ରମେ କ୍ରମେ ଦୂରେଇ ଯିବାରେ ଲାଗେ ।
ପକ୍ଷାନ୍ତରେ କଥିତଭାଷାରେ ନିରବଚ୍ଛିନ୍ନ ପରିବର୍ତ୍ତନ ଲାଗି ରହିଥାଏ ।
ଏହିପରି କାଳକ୍ରମେ କଥିତଭାଷା ଓ ସାହିତ୍ୟିକଭାଷା ମଧ୍ୟରେ
ବେଶି ବ୍ୟବଧାନ ସୃଷ୍ଟି ହେଲେ ସାହିତ୍ୟିକ ଭାଷା ପରିତ୍ୟକ୍ତ ହୁଏ
ଏବଂ କଥିତଭାଷାର ନୂତନ ରୂପ ସାହିତ୍ୟର ବାହନ ହୁଏ ।
ଫଳରେ ପୁଣି ଏକ ନୂତନ ସାହିତ୍ୟିକ ଭାଷାର ସୃଷ୍ଟି ହୁଏ । ତାହା-
ମଧ୍ୟ କାଳକ୍ରମେ କଥିତଭାଷାଠାରୁ ଦୂରେଇଯାଏ । ଏହିପରି କଥିତ-
ଭାଷାର ଅବିଚ୍ଛିନ୍ନ ପରିବର୍ତ୍ତନଶୀଳ ଧାରା ବିଭିନ୍ନ ସାହିତ୍ୟିକ ଭାଷା
ସୃଷ୍ଟି କରେ । ଅନେକ ଭାଷାର ବିଭିନ୍ନ ସାହିତ୍ୟିକରୂପ ମୃତ ହୋଇ-
ଯାଇଛି । କିନ୍ତୁ ସଂସ୍କୃତ ଏକ ସାହିତ୍ୟିକ ଭାଷା ହିସାବରେ ଦୀର୍ଘ
କାଳ ଧରି ବଞ୍ଚି ଆସିଅଛି ଏବଂ ଭାରତୀୟ ଆର୍ଯ୍ୟଭାଷାର କଥିତ
ଧାରାରୁ ଯେତେ ସାହିତ୍ୟିକ ଭାଷା ରୂପଲାଭ କରିଛି, ସେଗୁଡ଼ିକୁ
ଯଥେଷ୍ଟ ପ୍ରଭାବିତ କରିଆସିଛି । ଏହା ତାର ପରମ ଗୌରବର
ପରିଚାୟକ ।

ଅଶୋକଙ୍କ ଶିଳାଲେଖ କାଳୀନ ବିଭିନ୍ନ କଥିତଭାଷା କ୍ରମ କ୍ରମ ପରିବର୍ତ୍ତିତ ହେବାରେ ଲାଗିଲା ଏବଂ ବିଭିନ୍ନ 'ପ୍ରାକୃତ' ନାମରେ ପ୍ରସିଦ୍ଧ ହେଲା । ପ୍ରାକୃତର ଅର୍ଥ ହେଉଛି ଜନସାଧାରଣଙ୍କ ଭାଷା । ପାଲି ମଧ୍ୟ ଏକ ପ୍ରାକୃତ । କିନ୍ତୁ କଥିତଭାଷାର ପ୍ରାକୃତ ନାମ ପ୍ରାପ୍ତ ଖ୍ରୀଷ୍ଟପର ୧ମ ଶତାବ୍ଦୀଠାରୁ ପ୍ରଚଳିତ । ବିଭିନ୍ନ ପ୍ରାକୃତରେ ସାହିତ୍ୟ ପ୍ରକାଶ ପାଇଲା ଏବଂ ସଂସ୍କୃତ ଦୃଶ୍ୟକାବ୍ୟରେ ପ୍ରାକୃତ ସ୍ୱତନ୍ତ୍ର ସ୍ଥାନ ଅଧିକାର କଲା । କିନ୍ତୁ ସଂସ୍କୃତଜ୍ଞ ବୈୟାକରଣିକମାନେ କଥିତ ପ୍ରାକୃତର ଭିତ୍ତି ଉପରେ ସଂସ୍କୃତକୁ ପ୍ରାକୃତରେ ପରିଣତ କଲେ ଏବଂ ତାକୁ ହିଁ ସାହିତ୍ୟରେ ବ୍ୟବହାର କଲେ । ଫଳରେ-କଥିତ ପ୍ରାକୃତ ଓ ସାହିତ୍ୟକ-ପ୍ରାକୃତ ମଧ୍ୟରେ ଯଥେଷ୍ଟ ବ୍ୟବଧାନ ସୃଷ୍ଟି ହେଲା । ବର୍ତ୍ତମାନ ଯେଉଁ ପ୍ରାକୃତ ରଚନାବଳୀ ମିଳେ, ସେଗୁଡ଼ିକର ଭାଷା ବିଭିନ୍ନ କଥିକ-ପ୍ରାକୃତ ଉପରେ ପ୍ରତିଷ୍ଠିତ ସାହିତ୍ୟକ-ରୂପ । ଏହି ସାହିତ୍ୟକ-ପ୍ରାକୃତ ମୁଖ୍ୟତଃ ପାଞ୍ଚ ପ୍ରକାର ଥିଲା । ଯଥା—ଶୌରସେନୀ, ମାଗଧୀ, ଅର୍ଦ୍ଧମାଗଧୀ, ପୈଶାଚୀ ଓ ମହାରାଷ୍ଟ୍ରୀ । ଶୌରସେନୀ ଶୂରସେନରେ, ମାଗଧୀ ମଗଧରେ ଅର୍ଦ୍ଧମାଗଧୀ ଶୂରସେନ ଓ ମଗଧର ମଧ୍ୟବର୍ତ୍ତୀ ଅଞ୍ଚଳରେ, ପୈଶାଚୀ ଭାରତର ଉତ୍ତରପଶ୍ଚିମ ଅଞ୍ଚଳରେ ଏବଂ ମହାରାଷ୍ଟ୍ରୀ ମହାରାଷ୍ଟ୍ରରେ ପ୍ରଚଳିତ ଥିଲା । ଏଗୁଡ଼ିକ କଥିତଭାଷାଠାରୁ ଦୂରେଇ ଯାଇଥିଲେ ମଧ୍ୟ ସଂସ୍କୃତ ଅପେକ୍ଷା ସହଜବୋଧ୍ୟ ଥିଲେ । ଏହି ଭାଷାଗୁଡ଼ିକ ମଧ୍ୟରେ କେତେକ ବୈସାଦୃଶ୍ୟ ଥିଲେ ହେଁ ପରସ୍ପର ସାଦୃଶ୍ୟ ବହୁ ପରିମାଣରେ ଥିଲା । ଏହାର କାରଣ, ଏଗୁଡ଼ିକ ଏକ ଆର୍ଯ୍ୟଭାଷାର କ୍ରମବିକଶିତ ବିଭିନ୍ନ ରୂପ । କେତେକ ଭାଷାତତ୍ତ୍ୱବିତ୍‌ଙ୍କ ମତରେ ମହାରାଷ୍ଟ୍ରୀ ଶୌରସେନୀର ପରବର୍ତ୍ତୀ ସ୍ତର । କିନ୍ତୁ ପ୍ରାକୃତ—

ବୈୟାକରଣିକମାନେ ମହାରାଷ୍ଟ୍ରୀକୁ ମୂଳ ପ୍ରାକୃତ ବୋଲି ଗ୍ରହଣ କରିଛନ୍ତି । ସେ ଯାହାହେଉ, ସେତେବେଳେ ଅନେକ ପ୍ରାକୃତ କଥିତ ହେଉଥିଲା ଏବଂ ସେଗୁଡ଼ିକ ମଧ୍ୟରେ ଉକ୍ତ ପାଞ୍ଚପ୍ରକାର ସାହିତ୍ୟିକ ରୂପ ଥିଲା, ଏହା ନିଶ୍ଚିତ ।

ନିୟମାବଦ୍ଧ ହେବାଦ୍ୱାରା ସାହିତ୍ୟିକ ପ୍ରାକୃତର ପରିବର୍ତ୍ତନ ସମ୍ଭବପର ହେଲାନାହିଁ । କିନ୍ତୁ ଜନସାଧାରଣଙ୍କ କଥିତପ୍ରାକୃତ କାଳକ୍ରମେ ବଦଳିବାରେ ଲାଗିଲା । ବୈୟାକରଣିକମାନେ ସାହିତ୍ୟିକ ପ୍ରାକୃତକୁ ଶୁଦ୍ଧ ଭାଷାରୂପେ ଗ୍ରହଣ କରି ପରିବର୍ତ୍ତିତ କଥିତ ପ୍ରାକୃତକୁ ତାର ଭ୍ରଷ୍ଟ ରୂପ ବୋଲି କହିଲେ । ତେଣୁ କଥିତ-ପ୍ରାକୃତଗୁଡ଼ିକର ନାମ ହେଲା'ଅପଭ୍ରଂଶ' । ସାହିତ୍ୟିକ ପ୍ରାକୃତ କ୍ରମ କ୍ରମେ ଅପ୍ରଚଳିତ ହୋଇପଡ଼ିଲା ଏବଂ ଅପଭ୍ରଂଶ ଭାଷାଗୁଡ଼ିକ ସାହିତ୍ୟରେ ବ୍ୟବହୃତ ହେଲେ । କିନ୍ତୁ ଅପଭ୍ରଂଶ ଭାଗ୍ୟରେ ମଧ୍ୟ ସେହି ଦୁର୍ଦ୍ଦଶା ଘଟିଲା । କାରଣ, ବୈୟାକରଣିକମାନେ କଥିତ ଅପଭ୍ରଂଶକୁ ଭିତ୍ତି କରି ସାହିତ୍ୟିକ ପ୍ରାକୃତକୁ ସାହିତ୍ୟିକ ଅପଭ୍ରଂଶରେ ପରିଣତ କଲେ । ଫଳରେ ଜନସାଧାରଣଙ୍କ କଥିତ ଅପଭ୍ରଂଶ ଓ ସାହିତ୍ୟର ଅପଭ୍ରଂଶ ପରସ୍ପରଠାରୁ ପୃଥକ ହୋଇଗଲେ । ଉକ୍ତ ସାହିତ୍ୟିକ ଅପଭ୍ରଂଶରେ ଅନେକ ଜୈନଗ୍ରନ୍ଥ, କାବ୍ୟ, କବିତା, ପୁରାଣ ପ୍ରଭୃତି ରଚିତ ହୋଇଅଛି ।

ପ୍ରତ୍ୟେକ କଥିତ ପ୍ରାକୃତରୁ ଗୋଟିଏ ଲେଖାଏଁ କଥିତ ଅପଭ୍ରଂଶ ସୃଷ୍ଟି ହୋଇଥିବ । କିନ୍ତୁ ବୈୟାକରଣିକମାନେ କେବଳ ତିନିଟି ସାହିତ୍ୟିକ ଅପଭ୍ରଂଶ ନାମୋଲ୍ଲେଖ କରିଛନ୍ତି । ଯଥା—ନାଗର, ବ୍ରାଚଡ଼ ଓ ଉପନାଗର । ଅନେକ କଥିତ ଅପଭ୍ରଂଶର ବୋଧହୁଏ ସାହିତ୍ୟ ନ ଥିଲା ।

କଥିତ ଅପଭ୍ରଂଶଗୁଡ଼ିକ କ୍ରମେ କ୍ରମେ ପରିବର୍ତ୍ତିତ ହୋଇ ବର୍ତ୍ତମାନ ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଗୁଜରାଟୀ ପ୍ରଭୃତି ଆଧୁନିକ ଭାରତୀୟ ଆର୍ଯ୍ୟଭାଷାରେ ପରିଣତ ହୋଇଅଛନ୍ତି ।

ଏଠାରେ ମନେରଖିବାର କଥା ଯେ ଭାରତୀୟ ଆର୍ଯ୍ୟଭାଷା-ଗୋଷ୍ଠୀର ଏହି ବିକାଶ କେବଳ କଥିତ ଧାରାରୁ ହୋଇଅଛି । କଥିତ ଭାଷାର ନିଦର୍ଶନ ମିଳେନାହିଁ । ତେଣୁ ବୈଦିକ, ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାମାନଙ୍କରେ ଯେଉଁ ସାହିତ୍ୟ ମିଳୁଅଛି, ସେଥିରୁ ଆମେ ଯେହି ସେହି ସମୟର କଥିତଭାଷାର ସ୍ୱରୂପ କେତେକ ପରିମାଣରେ ଅବଗତ ହୋଇଥାଉଁ ।

ଭାରତୀୟ ଆର୍ଯ୍ୟଭାଷାଗୋଷ୍ଠୀର ଏହି ବିକାଶକ୍ରମକୁ ତିନି ସ୍ତରରେ ବିଭକ୍ତ କରାଯାଏ । ପ୍ରାଚୀନ ଭାରତୀୟ ଆର୍ଯ୍ୟ (ଖ୍ରୀ. ପୂ. ୧୫୦୦—ଖ୍ରୀ. ପୂ. ୫୦୦), ମଧ୍ୟଭାରତୀୟ ଆର୍ଯ୍ୟ (ଖ୍ରୀ: ପୂ: ୫୦୦—ଖ୍ରୀ. ଅ. ୧୦୦୦) ଏବଂ ନବ୍ୟଭାରତୀୟ ଆର୍ଯ୍ୟ (ଖ୍ରୀ.ଅ. ୧୦୦୦ରୁ ବର୍ତ୍ତମାନ ପର୍ଯ୍ୟନ୍ତ) ! ପ୍ରଥମ ସ୍ତରରେ ବୈଦିକ, ଦ୍ୱିତୀୟ ସ୍ତରରେ ପାଲି, ପ୍ରାକୃତ ଓ ଅପଭ୍ରଂଶ ଏବଂ ତୃତୀୟ ସ୍ତରରେ ଓଡ଼ିଆ, ବଙ୍ଗଳା, ହିନ୍ଦୀ ପ୍ରଭୃତି ଆଧୁନିକ ଆର୍ଯ୍ୟଭାଷାମାନ ଅନ୍ତର୍ଗତ । ସଂସ୍କୃତ ପ୍ରାଚୀନ ସ୍ତରର ଅନ୍ତର୍ଗତ ହେଲେ ହେଁ ଆଜି ପର୍ଯ୍ୟନ୍ତ ଚଳିଆସୁଅଛି । ମଧ୍ୟ-ସ୍ତରରେ ପାଲି ଖ୍ରୀ.ପୂ. ୫୦୦ରୁ ଖ୍ରୀଷ୍ଟାବ୍ଦ ଆରମ୍ଭ ପର୍ଯ୍ୟନ୍ତ, ପ୍ରାକୃତ ଖ୍ରୀଷ୍ଟାବ୍ଦ ଆରମ୍ଭରୁ ୬୦୦ ପର୍ଯ୍ୟନ୍ତ ଏବଂ ଅପଭ୍ରଂଶ ଖ୍ରୀ: ଅ. ୬୦୦ରୁ ୧୦୦୦ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଅବଶ୍ୟ ଏହି ବିଭାଗ ସ୍ଥୂଳଭାବରେ କରାଯାଇଅଛି । କାରଣ ଭାଷାବିକାଶରେ ସଠିକ ସୀମାରେଖା ଟାଣିବା ସମ୍ଭବପର ନୁହେଁ ।

ସାଧାରଣତଃ ପ୍ରାଚୀନ ସ୍ତରରେ ଆର୍ଯ୍ୟଭାଷା * ସଂଶ୍ଳେଷାତ୍ମକ ଥିଲା ଏବଂ ଯୁକ୍ତାକ୍ଷରମାନଙ୍କର ବହୁଳ ବ୍ୟବହାର କରାଯାଉଥିଲା । ମଧ୍ୟସ୍ତରରେ ଭାଷା ସଂଶ୍ଳେଷାତ୍ମକ ରହିଲା, ମାତ୍ର ଯୁକ୍ତାକ୍ଷରମାନଙ୍କର ବ୍ୟବହାର ହ୍ରାସ ପାଇଲା । ଏକକ ବ୍ୟଞ୍ଜନଗୁଡ଼ିକ ମଧ୍ୟ କ୍ରମେ କ୍ରମେ ଲୁପ୍ତ ହେବାରେ ଲାଗିଲେ । ବର୍ତ୍ତମାନ ମହାରାଷ୍ଟ୍ରୀ ପ୍ରାକୃତରେ ଯେଉଁ ସାହିତ୍ୟ ମିଳୁଅଛି, ସେଥିରେ ଭାଷା ସ୍ୱରବହୁଳ ହୋଇଥିବାର ଦେଖାଯାଏ । ଏହି ଲକ୍ଷଣ ପ୍ରାକୃତର ଅନ୍ତିମ ଅବସ୍ଥାର ପରିଚାୟକ । ଆଧୁନିକ ସ୍ତରରେ ଭାଷା ବିଶ୍ଳେଷାତ୍ମକ ହେଲା ଏବଂ ବ୍ୟଞ୍ଜନ ବର୍ଣ୍ଣମାନଙ୍କର ପୁଣି ବହୁଳ ବ୍ୟବହାର କରାଗଲା ।

ଭାରତୀୟ ଆର୍ଯ୍ୟଭାଷା ଗୋଷ୍ଠୀରେ ଶୌରସେନୀର ସ୍ଥାନ ନିର୍ଣ୍ଣୟ କରିବା ପରେ ବର୍ତ୍ତମାନ ତାହାର ସ୍ୱରୂପ ଆଲୋଚ୍ୟ । ପ୍ରାକୃତର ସାଧାରଣ ଲକ୍ଷଣ ଯାହା, ତାହା ତ ଶୌରସେନୀରେ ଅଛି । ତା'ଛଡ଼ା ତାର ବିଶେଷ ଲକ୍ଷଣ କେତୋଟି ପରପୃଷ୍ଠାରେ ଦିଆଗଲା ।

---

* ବିଶ୍ଳେଷାତ୍ମକ ଭାଷାରେ ବିଭକ୍ତି ଚିହ୍ନକୁ ଶବ୍ଦର ପରେ ହେଉ ବା ପୂର୍ବରେ ହେଉ, କେବଳ ଯୋଡ଼ିଦିଆଯାଏ । ଯଥା— ରାମକୁ, ହରିଠାରୁ 'Vith Ram, form Hari ଇତ୍ୟାଦି । କିନ୍ତୁ ସଂଶ୍ଳେଷାତ୍ମକ ଭାଷାରେ ବିଭକ୍ତିଚିହ୍ନ ଓ ଶବ୍ଦ, ଦୁହେଁ ମିଳି ଭିନ୍ନରୂପ ଧାରଣ କରନ୍ତି । ଯଥା—ନରେ, ମୁନୌ, ପିତରି, ନଦ୍ୟାଂ ଇତ୍ୟାଦି । ଏହି ପଦଗୁଡ଼ିକ ସମସ୍ତେ ୭ମୀ ବିଭକ୍ତି ଏକବଚନରେ ଥିଲେ ମଧ୍ୟ ପରସ୍ପର ଭିନ୍ନରୂପ ଧାରଣ କରିଛନ୍ତି । ତେଣୁ ସଂଶ୍ଳେଷାତ୍ମକ ଭାଷାରେ ବିଭକ୍ତିକୁ ଶବ୍ଦରୁ ପୃଥକ୍ କରି ହୁଏ ନାହିଁ । କିନ୍ତୁ ବିଶ୍ଳେଷାତ୍ମକ ଭାଷାରେ ତାହା କରିହୁଏ । ଧାତୁ-ବିଭକ୍ତି କ୍ଷେତ୍ରରେ ମଧ୍ୟ ଏହି ନିୟମ ।

୧ । ସବୁଠାରୁ ବଡ଼ ଲକ୍ଷଣ ହେଉଛି, ଏଥିରେ ସଂଯୁକ୍ତ ହୋଇ ନ ଥିବା ଏବଂ ଶବ୍ଦର ମୂଳରେ ନ ଥିବା 'ତ' ଓ 'ଦ' ସ୍ଥାନରେ ଯଥାକ୍ରମ 'ଦ' ଓ 'ଧ' ହୁଏ, ଯଥା—ପିତା—ପିଦା । ଧ୍ରୁବାଗୀତଂ—ଧ୍ରୂଆଗୀଦଂ, ଯଥା—ଜଧା, କଥୟ—କଧେହି, ଇତ୍ୟାଦି ।

୨ । ଏଥିରେ ବ୍ୟଞ୍ଜନବର୍ଣ୍ଣମାନଙ୍କର ଲୋପ ଅପେକ୍ଷାକୃତ କମ ।

୩ । କ୍ତ୍ୱା ବା ଲ୍ୟପ (ଅସମାପିକା କ୍ରିୟାର ପ୍ରତ୍ୟୟ) 'ଇଅ' ହୁଏ । ଯଥା ଭୂତ୍ୱା—ଭବିଅ: ପରିତ୍ୟଜ୍ୟ—ପରିହରିଅ ଇତ୍ୟାଦି ।

୪ । 'ଭୂ' ଧାତୁର 'ଭୋ' ଓ 'ହୋ' ଉଭୟ ହୁଏ । ଯଥା—ଭବତୁ ଭୋଦୁ, ହୋଦୁ ।

୫ । 'ସ୍ଥା' ଧାତୁରୁ 'ଚିଟ୍ଠ' ଏବଂ 'ଦୃଶ' ଧାତୁର 'ପେକ୍ଖ' ଓ 'ପେଚ୍ଛ' ଉଭୟ ହୁଏ । ଯଥା—ତିଷ୍ଠତି—ଚିଟ୍ଠଦି, ପ୍ରେକ୍ଷତେ—ପେକ୍ଖଦି, ପେଚ୍ଛଦି ।

୬ । 'ଏବ' 'ଜ୍ଜେବବ' ହୁଏ ଏବଂ 'ଇବ' 'ବିଅ' ହୁଏ ।

୭ । 'ଷ୍ୟାମି' 'ସ୍ସଂ' ହୁଏ । ଯଥା—ଗମିଷ୍ୟାମି ଗମିସ୍ସଂ ଖଣ୍ଡିୟିଷ୍ୟାମି—ଖଣ୍ଡସ୍ସଂ, ଇତ୍ୟାଦି ।

ଏହାଛଡ଼ା ଆହୁରି କେତେକ ବୈଶିଷ୍ଟ୍ୟ ମଧ୍ୟ ଶୌରସେନୀରେ ପରିଦୃଷ୍ଟ ହୁଏ । ଏ ସମସ୍ତ କର୍ପୂରମଞ୍ଜରୀର ଭାଷାରେ ସ୍ପଷ୍ଟ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଉକ୍ତ ନାଟିକାରେ ଭାଷାଗତ କେତେକ ନିୟମ ସବୁଠାରେ ପାଳିତ ହୋଇନାହିଁ । ଏଥିରୁ ମନେହୁଏ, ରାଜଶେଖର କଥିତଭାଷାପ୍ରତି ଅଧିକ ଧ୍ୟାନ ଦେଇଥିଲେ । କୌଣସି କଥିତଭାଷାରେ ଆଭ୍ୟନ୍ତରୀଣ ରୂପଭିନ୍ନତା ସ୍ୱାଭାବିକ । କର୍ପୂର-

ମଞ୍ଜରୀରେ ତାହା ହିଁ ହୋଇଛି । ଆଜି ମଧ୍ୟ ଏଥିରେ ଟେଙ୍ଗା, ଚଙ୍ଗ, ଚରଟୁଠୀ ପ୍ରଭୃତି କେତୋଟି ଗ୍ରାମ୍ୟଶବ୍ଦର ପ୍ରୟୋଗ କରାଯାଇଅଛି ।

ସଂସ୍କୃତ ନାଟକରେ ପ୍ରାକୃତ ଭାଷାର ଗଦ୍ୟ ଶୌରସେନୀରେ ଏବଂ ପଦ୍ୟ ମହାରାଷ୍ଟ୍ରୀରେ ଲେଖାହେବା ଅଳଙ୍କାରଶାସ୍ତ୍ରର ନିୟମ ବୋଲି ଦର୍ଶାଇ ପ୍ରଫେସର କନୋ କହନ୍ତି ଯେ କର୍ପୂରମଞ୍ଜରୀର ଗଦ୍ୟ ଶୌରସେନୀ ଏବଂ ପଦ୍ୟ ମହାରାଷ୍ଟ୍ରୀରେ ଲିଖିତ । ତେଣୁ ସେ ସ୍ୱସମ୍ପାଦିତ କର୍ପୂରମଞ୍ଜରୀରେ ସମସ୍ତ ପଦ୍ୟକୁ ମହାରାଷ୍ଟ୍ରୀରେ ପରିଣତ କରିଛନ୍ତି । କିନ୍ତୁ ପ୍ରକୃତରେ ସମଗ୍ର କର୍ପୂରମଞ୍ଜରୀର ଭାଷା କେବଳ ଶୌରସେନୀ । ନିମ୍ନରେ ଏହାର କେତେଗୋଟି କାରଣ ଦିଆଗଲା ।

ସଂସ୍କୃତ ନାଟକରେ ପ୍ରାକୃତପଦ୍ୟ ମହାରାଷ୍ଟ୍ରୀରେ ଲେଖାହେବା ନିୟମ ରାଜଶେଖରଙ୍କ ସମୟର ପରବର୍ତ୍ତୀ ! କାରଣ ତାଙ୍କ ପୂର୍ବରୁ ରଚିତ କୌଣସି ଅଳଙ୍କାରଶାସ୍ତ୍ରରେ ଉକ୍ତ ନିୟମ ପରିଦୃଷ୍ଟ ହୁଏ ନାହିଁ । ଭରତଙ୍କ ନାଟ୍ୟଶାସ୍ତ୍ରରେ (ଖ୍ରୀଷ୍ଟପର ୩ୟ ଶତାବ୍ଦୀ) ମହାରାଷ୍ଟ୍ରୀର ନାମୋଲ୍ଲେଖ ପର୍ଯ୍ୟନ୍ତ ନାହିଁ । ରାଜଶେଖରଙ୍କ ସମୟରେ କିମ୍ବା ତାଙ୍କ ପୂର୍ବରୁ ରଚିତ କୌଣସି ସଂସ୍କୃତ ନାଟକରେ ମଧ୍ୟ ମହାରାଷ୍ଟ୍ରୀ ପ୍ରାକୃତର ନିଦର୍ଶନ ମିଳେନାହିଁ । ତେଣୁ ଅନୁମାନ କରାଯାଏ, ନାଟକରେ ମହାରାଷ୍ଟ୍ରୀର ପ୍ରଚଳନ ଦଶମ ଶତକର ପୂର୍ବବର୍ତ୍ତୀ ନୁହେଁ ।

ହେମଚନ୍ଦ୍ରଙ୍କ ( ଖ୍ରୀଷ୍ଟପର ଦ୍ୱାଦଶ ଶତାବ୍ଦୀ ) କାବ୍ୟାନୁଶାସନରେ ସଟ୍ଟକର ଲକ୍ଷଣ ଦିଆଯାଇଛି—"ବିଷ୍କମ୍ଭକ ପ୍ରବେଶକ-

ରହିତୋ ଯସ୍ତ୍ୱେକଭାଷୟା। ଅବତ୍ୟପ୍ରାକୃତସଂସ୍କୃତୟା ସ ସଟ୍ଟକୋ ନାଟିକା ସମଃ" ଅର୍ଥାତ୍ ସଟ୍ଟକ ନାଟିକାର ଅନୁରୂପ । ଏଥିରେ ବିଷ୍କମ୍ଭକ ଓ ପ୍ରବେଶକ ନ ଥାଏ ଏବଂ ଏହା ଗୋଟିଏ ମାତ୍ର ଭାଷାର ରଚିତ ହୁଏ; କିନ୍ତୁ ସଂସ୍କୃତ କିମ୍ବା ପ୍ରାକୃତରେ ନୁହେଁ । ପ୍ରାକୃତ ଶବ୍ଦ ବୈୟାକରଣିକମାନଙ୍କଦ୍ୱାରା ସାଧାରଣତଃ ମହାରାଷ୍ଟ୍ରୀ ଅର୍ଥରେ ବ୍ୟବହୃତ । ତେଣୁ ଏଠାରେ ସଟ୍ଟକ ମହାରାଷ୍ଟ୍ରୀରେ ଲିଖିତ ହୁଏନାହିଁ ବୋଲି କୁହାଯାଇଛି ।

ଧନଞ୍ଜୟଙ୍କ ଦଶରୂପକରେ ( ଖ୍ରୀଷ୍ଟପର ଦଶମ ଶତାବ୍ଦୀର ଶେଷଭାଗ କିମ୍ବା ଏକାଦଶ ଶତାବ୍ଦୀର ଆଦ୍ୟଭାଗ ) ବିଭିନ୍ନ ପ୍ରାକୃତର ବ୍ୟବହାର ସମ୍ବନ୍ଧରେ ମଧ୍ୟ ଉଲ୍ଲେଖ ଅଛି । ଯଥା "ସ୍ତ୍ରୀଣାଂ ତୁ ପ୍ରାକୃତଂ ପ୍ରାୟଃ ଶୌରସେନ୍ୟଧମେଷୁ ଚ । ପିଶାଚାତ୍ୟନ୍ତ ନୀଚାଦୌ ପିଶାଚଂ ମାଗଧଂ ତଥା ॥" ଏହି ଉକ୍ତିର ଦୁଇ ପ୍ରକାର ଅର୍ଥ କରାଯାଇପାରେ । ୧ମଟି ହେଉଛି—ସ୍ତ୍ରୀମାନଙ୍କର ଭାଷା ପ୍ରାକୃତ ଅର୍ଥାତ୍ ମହାରାଷ୍ଟ୍ରୀ, ଅଧମ ଚରିତ୍ରମାନଙ୍କର ଶୌରସେନୀ ଇତ୍ୟାଦି । ଏହି ଅର୍ଥ ଅନୁସାରେ ସ୍ତ୍ରୀମାନଙ୍କର ଭାଷା ଗଦ୍ୟ ହେଉ ବା ପଦ୍ୟ ହେଉ, ମହାରାଷ୍ଟ୍ରୀ ହେବାର କଥା । କିନ୍ତୁ ପଦ୍ୟରେ ମହାରାଷ୍ଟ୍ରୀର ବ୍ୟବହାର ପରବର୍ତ୍ତୀ ନାଟକମାନଙ୍କରେ ହୋଇଥିଲେ ମଧ୍ୟ ଗଦ୍ୟରେ ଏହା କୌଣସି ନାଟକରେ ବ୍ୟବହୃତ ହୋଇନାହିଁ । ତେଣୁ ପ୍ରଥମ ଅର୍ଥ ଅସମୀଚୀନ ବୋଧହୁଏ । ୨ୟ ଅର୍ଥ ହେଉଛି—ସ୍ତ୍ରୀମାନଙ୍କର ଭାଷା ପ୍ରାକୃତ । ଏହି ପ୍ରାକୃତ ଶୌରସେନୀ ଏବଂ ଅଧମ ଚରିତ୍ରମାନଙ୍କର ମଧ୍ୟ ଏହି ଭାଷା, ଇତ୍ୟାଦି । ଏହି ଅର୍ଥ ଅଧିକ ସମୀଚୀନ ।

ଉକ୍ତ ଆଲୋଚନାରୁ ସ୍ପଷ୍ଟ ଜଣାପଡେ, କର୍ପୂରମଞ୍ଜରୀରେ ମହାରାଷ୍ଟ୍ରୀ ପ୍ରାକୃତର ପ୍ରୟୋଗ କରାଯାଇ ନ ଥିଲା । କିନ୍ତୁ ବର୍ତ୍ତମାନ

ଏଥିରେ ଯେଉଁ କେତେକ ମହାରାଷ୍ଟ୍ରୀ ଲକ୍ଷଣ ଦେଖାଯାଏ, ତାହା ପରବର୍ତ୍ତୀ ପ୍ରକ୍ଷେପ ।

ଏଠାରେ ଆଉ ଏକ ପ୍ରସଙ୍ଗ ଆଲୋଚ୍ୟ । ତାହା ହେଉଛି— ପୂର୍ବରୁ ପ୍ରାକୃତରେ ନାଟକ ରଚନା କରିବାର ନିୟମ କୌଣସି ଅଳଙ୍କାର ଶାସ୍ତ୍ରରେ ତ ନ ଥିଲା, ରାଜଶେଖର କ ଉଦ୍ଦେଶ୍ୟରେ ଏହି ଅଭିନବ କଳ୍ପନା କଲେ ? କର୍ପୂରମଞ୍ଜରୀର ପ୍ରସ୍ତାବନାରେ ସେ ନିଜେ ସୂତ୍ରଧାରଙ୍କ ମୁଖରେ ଏହି ପ୍ରଶ୍ନ ଉତ୍ଥାପିତ କରିଛନ୍ତି । ସୂତ୍ରଧାର ପାରିପାର୍ଶ୍ୱିକଙ୍କୁ ପଚାରିଛନ୍ତି—କବି ସଂସ୍କୃତ ଛାଡ଼ି ପ୍ରାକୃତରେ କାହିଁକି ଏହା ରଚନା କଲେ ? ପାରିପାର୍ଶ୍ୱିକ ଉତ୍ତର ଦେଇଛନ୍ତି—"ଚମତ୍କାରପୂର୍ଣ୍ଣ ଉକ୍ତି ହିଁ କାବ୍ୟ, ତାହା ଯେଉଁ ଭାଷାରେ ଲେଖାହୋଇ ପଛେ ।" କିନ୍ତୁ ଏହା ବାସ୍ତବ କାରଣ ବୋଲି ବୋଧହୁଏ ନାହିଁ । ବରଂ ଏଥିରେ ବାସ୍ତବ କାରଣକୁ ଲୁଚାଇବାର ଚେଷ୍ଟା କରାଯାଇଅଛି । ଯଦି କୁହାଯାଏ, ରାଜଶେଖର ନିଜର ସର୍ବଭାଷାଚତୁରତା ପ୍ରଦର୍ଶନ କରିବା ଅଭିପ୍ରାୟ ନେଇ ପୂର୍ଣ୍ଣମାତ୍ର ପ୍ରାକୃତରେ ଏକ ନାଟିକା ପ୍ରଣୟନ କଲେ; ତାହା ମଧ୍ୟ ଠିକ୍ ନୁହେଁ । କାରଣ, ତାଙ୍କର ଏହି ଅଭିପ୍ରାୟ ଥିଲେ ସେ ଭିନ୍ନ ଭିନ୍ନ ଭାଷା ବ୍ୟବହାର କରିପାରିଥାଆନ୍ତେ । ତା'ଛଡ଼ା ସଂସ୍କୃତରେ ଲେଖିବା ଅପେକ୍ଷା ପ୍ରାକୃତରେ ଲେଖିବା କିଛି ବେଶି ଭାଷାପ୍ରବୀଣତାର ପରିଚାୟକ ନୁହେଁ ।

ପ୍ରକୃତରେ ରାଜଶେଖର ଜନସାଧାରଣଙ୍କ ସହଜବୋଧ ନିମନ୍ତେ ହିଁ ଏହି ନୂତନ କଳ୍ପନା କରିଛନ୍ତି । ତାଙ୍କ ସମୟରେ ଅପଭ୍ରଂଶ ଭାଷା କଥିତ ହେଉଥିଲା । ସଂସ୍କୃତ ରଚନା ଲୋକମାନଙ୍କ ନିକଟରେ କ୍ରମେ କ୍ରମେ ଦୁର୍ବୋଧ ହୋଇ ଆସୁଥିଲା । ତେଣୁ

ରାଜଶେଖର ଲୋକସୁବିଧା ପ୍ରତି ଦୃଷ୍ଟି ରଖି କେବଳ ପ୍ରାକୃତରେ ନାଟିକାଟିଏ ଲେଖିଲେ । ଏହା ତାଙ୍କର ନୂତନ ଶୈଳୀଗତ କ ପ୍ରୟୋଗ ଥିଲା ଏବଂ ଏ ଦିଗରେ ତାଙ୍କର ବିଦୁଷୀ ପତ୍ନୀ ଅବନ୍ତୀସୁନ୍ଦରୀ ତାଙ୍କୁ ଖୁବ୍ ସାହାଯ୍ୟ କରିଥିଲେ । ଅବନ୍ତୀସୁନ୍ଦରୀଙ୍କ ନିର୍ଦ୍ଦେଶରେ ଏହାର ପ୍ରଥମ ଅଭିନୟ ସମ୍ପନ୍ନ ହୋଇଥିଲା ବୋଲି କର୍ପୂରମଞ୍ଜରୀର ପ୍ରସ୍ତାବନାରୁ ଜଣାଯାଏ ।

ଯେଉଁ ଉଦ୍ଦେଶ୍ୟରେ ଲେଖାଯାଉ ପଛେ, କର୍ପୂରମଞ୍ଜରୀ ଲୋକମାନଙ୍କ ଦ୍ୱାରା ଆଦୃତ ହେଲା । କାରଣ, ଏକେ ତ ଏହାର ଭାଷା ସଂସ୍କୃତ ଅପେକ୍ଷା ସହଜବୋଧ ଥିଲା । ଦ୍ୱିତୀୟରେ ଏଥିରେ ଅଭିନବ ଦୃଶ୍ୟଯୋଜନା ଜନମନ ଆକର୍ଷଣ କଲା । ତେଣୁ ବିଭିନ୍ନ ସ୍ଥାନରେ ଏହା ଅଭିନୀତ ହେଲା ଏବଂ ବିଭିନ୍ନ ପୋଥିରେ ଏହାର ନକଲ କରାଗଲା । ଏବେ ଏଥିରେ ଯେଉଁ ଭାଷାଗତ ପାର୍ଥକ୍ୟମାନ ଲକ୍ଷିତ ହୁଏ, ତାହା ହୁଏ ତ ଏହାର ବିଭିନ୍ନ ସ୍ଥାନରେ ପ୍ରଚଳନ ଯୋଗୁଁ ଘଟିଥିବ ।

---

## କର୍ପୂରମଞ୍ଜରୀ ଏକ ସଟ୍ଟକ

କର୍ପୂରମଞ୍ଜରୀର ପ୍ରସ୍ତାବନାରେ ନାଟକ କବି ସଟ୍ଟକର ଲକ୍ଷଣ ଦେଇଛନ୍ତି—ସଟ୍ଟକ ପୂର୍ଣ୍ଣତଃ ନାଟିକାର ଅନୁରୂପ କିନ୍ତୁ ଏଥିରେ ପ୍ରବେଶକ ଓ ବିଷ୍କମ୍ଭକ ନ ଥାଏ । ଭରତଙ୍କ ନାଟ୍ୟଶାସ୍ତ୍ର

ଅନୁସାରେ ନାଟିକାର ସ୍ୱରୂପ—

"ଛଳ ବସ୍ତୁ ପ୍ରକରଣାନ୍ନାଟକାନ୍ନାୟକୋ ନୃପଃ ।"
ପ୍ରଖ୍ୟାତୋ ଧୀରଲଳିତଃ ଶୃଙ୍ଗାରୋଽଙ୍ଗୀ ସଲକ୍ଷଣଃ ॥
ଦେବୀ ତତ୍ର ଭବେଜ୍ଜ୍ୟେଷ୍ଠା ପ୍ରଗଲ୍‌ଭା ନୃପବଂଶଜା ।
ଗମ୍ଭୀରା ମାନିନୀ କୃଚ୍ଛ୍ରାତ୍ତଦ୍‌ବଶାନ୍ନେତୃସଙ୍ଗମଃ ॥
ନାୟିକା ତାଦୃଶୀ ମୁଗ୍‌ଧା ଦିବ୍ୟା ଚାତିମନୋହରା ।
ଅନ୍ତଃପୁରାଦି ସମ୍ବନ୍ଧାଦାସନ୍ନା ଶ୍ରୁତିଦର୍ଶନୈଃ ॥
ଅନୁରାଗୋ ନବାବସ୍ଥୋ ନେତୁସ୍ତସ୍ୟାଂ ଯଥୋତ୍ତରମ୍ ।
ନେତା ତତ୍ର ପ୍ରବର୍ତ୍ତେତ ଦେବୀତ୍ରାସେନ ଶଙ୍କିତଃ ।
କୈଶିକ୍ୟଙ୍ଗୈଶ୍ଚତୁର୍ଭିଶ୍ଚ ଯୁକ୍ତାଙ୍କୈରିବ ନାଟିକା ॥"

ଅର୍ଥାତ୍ ନାଟିକାର ବସ୍ତୁବସ୍ତୁ କାଳ୍ପନିକ । ନାୟକ ଧୀରଲଳିତ ଶ୍ରେଣୀର ଏବଂ ରାଜା ଏହି ନାୟକ ହୁଅନ୍ତି । ମୁଖ୍ୟ ରସ ଶୃଙ୍ଗାର । ମହାରାଣୀ ଜ୍ୟେଷ୍ଠା, ରାଜକୁଳସମ୍ଭୂତା, ପ୍ରଗଲ୍‌ଭା ଏବଂ ମାନିନୀ ହୁଅନ୍ତି । ନାୟିକା ମୁଗ୍‌ଧା, ରାଜକୁଳସମ୍ଭୂତା, ଦିବ୍ୟା ତଥା ପରମ ସୁନ୍ଦରୀ ହୁଅନ୍ତି । ଅନ୍ତଃପୁର ଇତ୍ୟାଦିର ସମ୍ବନ୍ଧରୁ ହେଉ ବା ଶ୍ରବଣ, ଦର୍ଶନରୁ ହେଉ, ତାଙ୍କ ସହିତ ନାୟକଙ୍କର ପ୍ରେମାନୁରାଗ ଉତ୍ପନ୍ନ ହୋଇ ବୃଦ୍ଧି ପ୍ରାପ୍ତ ହୁଏ । ନାୟକ ମହାରାଣୀଙ୍କ ଭୟରେ ନାୟିକାଙ୍କ ସହିତ ଶଙ୍କିତ ଭାବରେ ପ୍ରେମ କରନ୍ତି । କିନ୍ତୁ ଶେଷରେ ମହାରାଣୀଙ୍କ ଇଚ୍ଛାରେ ଦୁହିଁଙ୍କ ମଧ୍ୟରେ ସଙ୍ଗମ ସମ୍ଭବ ହୁଏ । ଆଉ ମଧ୍ୟ ଏଥିରେ କୈଶିକୀ ବୃତ୍ତିର ଚାରିଅଙ୍ଗ ବିଶିଷ୍ଟ ଚାରି ଅଙ୍କ ଥାଏ ।

ସଟ୍ଟକ ପ୍ରଥମେ ଥିଲା ଏକପ୍ରକାର ନୃତ୍ୟ । ଭରହୁତ ଶିଳାଲେଖରେ ନୃତ୍ୟଗୀତ ସନ୍ଦର୍ଭରେ 'ସାଡ଼କ' ଶବ୍ଦର ଉଲ୍ଲେଖ

ଅଛି । ଡକ୍ଟର ହର୍ଣ୍ଣଲେଙ୍କ (Hoernle) ମତରେ ଏହା ସଂସ୍କୃତ 'ସାଟକ' ଶବ୍ଦରୁ ଉତ୍ପନ୍ନ । କର୍ପୂରମଞ୍ଜରୀର ପ୍ରସ୍ତାବନାରେ ଥିବା ସଟ୍ଟକଂ ଣଚ୍ଚିଦବ୍ବଂ' (ସଟ୍ଟକଂ ନର୍ତ୍ତିତବ୍ୟଂ) ଏହି ଉକ୍ତିରୁ ଜଣାଯାଏ, ନୃତ୍ୟ ସଟ୍ଟକର ଏକ ଆବଶ୍ୟକ ଅଙ୍ଗ ଥିଲା । 'ଭାବ-ପ୍ରକାଶନ' ଗ୍ରନ୍ଥରେ ମଧ୍ୟ ସଟ୍ଟକର ଏହିପରି ଲକ୍ଷଣ ଦିଆଯାଇଛି— "ସଟ୍ଟକଂ ନାଟିକା ଭେଦୋ ନୃତ୍ୟଭେଦାତ୍ମକଂ ପ୍ରିୟେ ।"

ଉକ୍ତ ଲକ୍ଷଣଗୁଡ଼ିକ ସହିତ ଲକ୍ଷ୍ୟ ସଂଗତି କଲେ କର୍ପୂରମଞ୍ଜରୀ ଏକ ସଟ୍ଟକ ବୋଲି ପ୍ରତିପନ୍ନ ହୁଏ ।

ସଟ୍ଟକଜାତୀୟ ନାଟ୍ୟର ପ୍ରଚଳନ କେବେଠାରୁ ଆରମ୍ଭ ହେଲା, ତାହା ନିର୍ଣ୍ଣୟ କରିବା କଠିନ । ଭରତଙ୍କ ନାଟ୍ୟଶାସ୍ତ୍ରରେ କିମ୍ବା ଧନଞ୍ଜୟଙ୍କ ଦଶରୂପକରେ ସଟ୍ଟକର ଉଲ୍ଲେଖ ନାହିଁ । ଅଗ୍ନିପୁରାଣରେ ସଟ୍ଟକର ଉଲ୍ଲେଖ ଥିଲେ ମଧ୍ୟ ତାହାର ପ୍ରାଚୀନତା ସମ୍ବନ୍ଧରେ ସେପରି ନିଶ୍ଚିତତା ନାହିଁ । ରାଜଶେଖରଙ୍କ ସମୟରେ ବୋଧହୁଏ ଏହି ଜାତୀୟ ନାଟ୍ୟର ପ୍ରଚଳନ ନ ଥିଲା । କର୍ପୂରମଞ୍ଜରୀର ପ୍ରସ୍ତାବନାରେ ସଟ୍ଟକର ଲକ୍ଷଣ ଦିଆଯାଇଥିବାରୁ ଏହି ଅନୁମାନ କରାଯାଏ । ଅନ୍ୟ କୌଣସି ନାଟ୍ୟଜାତୀୟ ରଚନାର ପ୍ରସ୍ତାବନାରେ ଏଭଳି ସଂଜ୍ଞା ଦିଆଯାଇ ନାହିଁ ।

ସଟ୍ଟକର ଭାଷା ସମ୍ବନ୍ଧରେ ବିଭିନ୍ନ ମତ ଦେଖାଯାଏ । ବିଶ୍ୱନାଥଙ୍କ ସାହିତ୍ୟଦର୍ପଣରେ ସଟ୍ଟକର ଯେଉଁ ଲକ୍ଷଣ ଦିଆଯାଇଛି, ତାହା, କର୍ପୂରମଞ୍ଜରୀକୁ ପୂର୍ବରୁ ଖାପ ଖୁଆଇବା ଦୃଷ୍ଟିରୁ ହୋଇଛି । ଏଥିରେ ସଟ୍ଟକର ଭାଷା କେବଳ ପ୍ରାକୃତ ବୋଲି ଉଲ୍ଲେଖ ଅଛି । ରାଜଶେଖର ସଟ୍ଟକର ଲକ୍ଷଣ

ଦେଇଥିଲେ ତେବେ ଏହାର ଭାଷା ସମ୍ବନ୍ଧରେ କିଛି କହନାହାନ୍ତି । କିନ୍ତୁ କର୍ପୂରମଞ୍ଜରୀର ପ୍ରସ୍ତାବନାରେ, କବି ସଂସ୍କୃତ ଛାଡ଼ି କାହିଁକି ପ୍ରାକୃତରେ ରଚନା କଲେ ? ସୂତ୍ରଧାରଙ୍କ ଏହି ପ୍ରଶ୍ନରୁ ଅନୁମାନ କରାଯାଇପାରେ ଯେ ସଂସ୍କୃତରେ ମଧ୍ୟ ସଟ୍ଟକ ଲେଖାଯିବାର ନିୟମ ଥିଲା ।

ଭାବ ପ୍ରକାଶନରେ ଲିଖିତ ଅଛି—

ନ ବଦେତ୍ ପ୍ରାକୃତାଂ ଭାଷାଂ ରାଜେନ୍ଦ୍ର କଡଚେତ୍ତରୁଃ ।
ମାଗଧୀ ଶୌରସେନ୍ୟା ବା ବଦେତ୍ ରାଜେନ୍ଦ୍ର କେଚନ ।।

ଅର୍ଥାତ୍ କେହି କେହି କହନ୍ତି—ସଟ୍ଟକରେ ରାଜା ପ୍ରାକୃତ ଭାଷାରେ କଥାବାର୍ତ୍ତା କରିବେ ନାହିଁ । ପୁଣି ଅନ୍ୟ କେତେକଙ୍କ ମତରେ ରାଜା ପ୍ରାକୃତଭାଷା ବ୍ୟବହାର କରିପାରନ୍ତି । କିନ୍ତୁ ସେ ଭାଷା ମାଗଧୀ ବା ଶୌରସେନୀ ହେବା ଉଚିତ ।

ନାଟ୍ୟ ଦର୍ପଣରେ ଉଲ୍ଲେଖ ଅଛି "ଯନ୍ତ୍ୱେକଭାଷୟା ଭବତ୍ୟ-ପ୍ରାକୃତ ସଂସ୍କୃତୟା ।" ଅର୍ଥାତ୍ ସଟ୍ଟକ ଗୋଟିଏ ଭାଷାରେ ରଚିତ ହୁଏ । ସେହି ଭାଷା ପ୍ରାକୃତ (ମହାରାଷ୍ଟ୍ରୀ) କିମ୍ବା ସଂସ୍କୃତ ନୁହେଁ । କେହି କେହି ଏହାର ଭିନ୍ନ ଅର୍ଥ କରନ୍ତି । ଯଥା—ସଟ୍ଟକରେ ପ୍ରାକୃତ ଓ ସଂସ୍କୃତ ଯୁଗପତ୍ ବ୍ୟବହୃତ ହୁଏ ନାହିଁ ।

କର୍ପୂରମଞ୍ଜରୀ ବ୍ୟତୀତ ଆଉ ଖଣ୍ଡିଏ ମାତ୍ର ସଟ୍ଟକଜାତୀୟ ରଚନା ବର୍ତ୍ତମାନ ମିଳୁଅଛି । ତାହା ହେଉଛି — ଜୈନକବି ନୟଚନ୍ଦ୍ରଙ୍କ ରଚିତ ରମ୍ଭାମଞ୍ଜରୀ । ଏହାର ଭାଷା କେବଳ ପ୍ରାକୃତ ନୁହେଁ ; ଏଥିରେ ରାଜା ସଂସ୍କୃତ ବ୍ୟବହାର କରିଛନ୍ତି । ସୂତ୍ରଧାର ସଂସ୍କୃତ ଓ ପ୍ରାକୃତ, ଉଭୟ ବ୍ୟବହାର କରିଛନ୍ତି ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ସଟ୍ଟକର ଭାଷା ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ନିୟମ ଥିଲାପରି ଜଣାପଡ଼େ ନାହିଁ ।

— — —

## ଚରିତ୍ରଚିତ୍ରଣ

ପୂର୍ବ ନାଟ୍ୟକାରମାନଙ୍କୁ ଅଳଙ୍କାର-ଶାସ୍ତ୍ରର ନିୟମ ମାନି ଚଳିବାକୁ ପଡ଼ୁଥିଲା । ଅଳଙ୍କାର ଶାସ୍ତ୍ରମାନଙ୍କରେ ନାୟକ, ନାୟିକା ଓ ବିଦୂଷକ ପ୍ରଭୃତି ବିଭିନ୍ନ ଚରିତ୍ରର ସ୍ୱରୂପ ନିର୍ଦ୍ଦିଷ୍ଟ ହୋଇ ରହିଛି । ତେଣୁ ନାଟକରେ ଚରିତ୍ରଚିତ୍ରଣରେ ସ୍ୱାତନ୍ତ୍ର୍ୟ ଦେଖାଇବାର ଅବକାଶ ସେତେବେଳେ ନ ଥିଲା । ତଥାପି କାଳିଦାସ ପ୍ରଭୃତି କେତେକ ମହାକବି ନାଟକୀୟ ଚରିତ୍ରଚିତ୍ରଣରେ ଯେଉଁ ସ୍ୱାଭାବିକତା ପ୍ରଦର୍ଶନ କରିଛନ୍ତି, ତାହା ସେମାନଙ୍କର ପରମ ଶକ୍ତିମତ୍ତାର ପରିଚାୟକ ।

'କର୍ପୂରମଞ୍ଜରୀ'ରେ ରାଜା ଚନ୍ଦ୍ରପାଳ ନାୟକ । ନାଟ୍ୟଶାସ୍ତ୍ର ଅନୁସାରେ ସେ ଧୀରଲଳିତ ଶ୍ରେଣୀର । ଧୀରଲଳିତ ନାୟକ ନିଶ୍ଚିନ୍ତ, କଳାପ୍ରିୟ, ସୁଖୀ ଏବଂ ମୃଦୁ ସ୍ୱଭାବ ସଂପନ୍ନ ଅଟନ୍ତି । ରାଜା ଚନ୍ଦ୍ରପାଳଙ୍କଠାରେ ଏହି ସମସ୍ତ ଗୁଣ ପରିପୂର୍ଣ୍ଣ । ସେ ନିଶ୍ଚିନ୍ତ । ସମଗ୍ର ନାଟିକାର କୌଣସି ସ୍ଥାନରେ ତାଙ୍କର ରାଜ୍ୟଚିନ୍ତା ନାହିଁ । ନୃତ୍ୟ, ସଙ୍ଗୀତ ପ୍ରଭୃତି କଳାରେ ତାଙ୍କର ଯଥେଷ୍ଟ ଅଭିରୁଚି ଅଛି ଏବଂ ସେ ମୃଦୁସ୍ୱଭାବର ବ୍ୟକ୍ତି ଅଟନ୍ତି । ସେ ଖୁବ୍ ସୌନ୍ଦର୍ଯ୍ୟପ୍ରିୟ । ବସନ୍ତକାଳୀନ ଶୋଭା ଦର୍ଶନ କରି ସେ ମୁଗ୍ଧ ହୋଇଛନ୍ତି ଏବଂ ନିଜେ ମଧ୍ୟ ବସନ୍ତ ବର୍ଣ୍ଣନା କରିଛନ୍ତି । ଅପୂର୍ବ ସୁନ୍ଦରୀ କର୍ପୂରମଞ୍ଜରୀଙ୍କୁ ଦେଖିବାମାତ୍ରେ ସେ ତାଙ୍କପ୍ରତି ଅତ୍ୟନ୍ତ ଆସକ୍ତ ହୋଇପଡ଼ିଛନ୍ତି ଏବଂ

ଅନୁକ୍ଷଣ ତାଙ୍କର ଚିନ୍ତାରେ ମଗ୍ନ ରହିଛନ୍ତି । ଶେଷରେ କର୍ପୂରମଞ୍ଜରୀଙ୍କୁ ବିବାହ କରି ସେ ପରମ ଆନନ୍ଦ ଲାଭ କରିଛନ୍ତି । କିନ୍ତୁ ମହାରାଣୀ ବିଭ୍ରମଲେଖାଙ୍କ ପ୍ରତି ତାଙ୍କର ଔଦାସୀନ୍ୟ ପ୍ରକାଶ ପାଇନାହିଁ । କର୍ପୂରମଞ୍ଜରୀ ବୃକ୍ଷମାନଙ୍କୁ ଦୋହଦ ଦାନକଲେ, ମହାରାଣୀ କାହିଁକି କାହା କଲେ ନାହିଁ ? ବିଦୂଷକ ଏହି ପ୍ରଶ୍ନ ପଚାରନ୍ତେ ରାଜା କର୍ପୂରମଞ୍ଜରୀଙ୍କର ନବତାରୁଣ୍ୟ ହିଁ ତାହାର କାରଣ ବୋଲି ଉତ୍ତର ଦେଇଛନ୍ତି । ବିଭ୍ରମଲେଖା କର୍ପୂରମଞ୍ଜରୀଙ୍କ ଠାରୁ ସୌନ୍ଦର୍ଯ୍ୟରେ ନ୍ୟୂନ ବୋଲି ସେ କହି ନାହାନ୍ତି । କିନ୍ତୁ ଏହି ପ୍ରକାର ଅନୁରକ୍ତ ହେଲେ ସେ କର୍ପୂରମଞ୍ଜରୀଙ୍କ ପ୍ରତି ଅଧିକ ଆକୃଷ୍ଟ । ଏହାର କାରଣ ସେ ଏଡ଼େ ସୌନ୍ଦର୍ଯ୍ୟ-ପିପାସୁ ଯେ ଏକ ଅନନ୍ୟ ସୁନ୍ଦରୀର ଦର୍ଶନରେ ନିଜକୁ ଅନାସକ୍ତ ରଖି ପାରିନାହାନ୍ତି ।

## କର୍ପୂରମଞ୍ଜରୀ

କର୍ପୂରମଞ୍ଜରୀ ଏହି ନାଟିକାର ନାୟିକା । ସେ କୁନ୍ତଳଦେଶ ରାଜାଙ୍କର କନ୍ୟା ଏବଂ ମହାରାଣୀ ବିଭ୍ରମଲେଖାଙ୍କର ମାଉସୀ ଝିଅ ଭଉଣୀ । ମହାଯୋଗୀ ଭୈରବାନନ୍ଦ ତନ୍ତ୍ରବଳରେ ତାଙ୍କୁ ରାଜା ଚନ୍ଦ୍ରପାଳଙ୍କ ନିକଟରେ ଉପସ୍ଥାପିତ କରାଇଛନ୍ତି । ତାଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଦର୍ଶନ ମାତ୍ରେ ରାଜା ଅତ୍ୟନ୍ତ ମୁଗ୍ଧ ତଥା ଆକୃଷ୍ଟ ହୋଇ ପଡ଼ିଛନ୍ତି । କର୍ପୂରମଞ୍ଜରୀଙ୍କର ମଧ୍ୟ ରାଜାଙ୍କ ପ୍ରତି ଗଭୀର ଆସକ୍ତି ଜାତ ହୋଇଛି । ମାତ୍ର ଉଭୟେ ମହାରାଣୀଙ୍କୁ ଡରନ୍ତି । ସେଥିପାଇଁ ଉଭୟେ ଗୁପ୍ତଭାବରେ ପରସ୍ପର ସହ ମିଳିତ ହୁଅନ୍ତି । ମହାରାଣୀ ଏହା ଜାଣିପାରି ଗୋପନ ପ୍ରେମରେ ବାଧା ଦିଅନ୍ତି । କିନ୍ତୁ ଶେଷରେ ଭୈରବାନନ୍ଦଙ୍କ ଇଚ୍ଛାନୁସାରେ ରାଜାଙ୍କ ସହିତ କର୍ପୂରମଞ୍ଜରୀଙ୍କର ବିବାହ ସମ୍ପନ୍ନ ହୁଏ ଓ ଉଭୟେ ସୁଖୀ ହୁଅନ୍ତି ।

## ରାଣୀ ବିଭ୍ରମଲେଖା

ନାଟ୍ୟଶାସ୍ତ୍ରର ନିୟମ ଅନୁସାରେ ମହାରାଣୀ ରାଜକୁଳସମ୍ଭୂତା, ପ୍ରଗଲ୍‌ଭା ଏବଂ ମାନବତୀ ହେବା ଉଚିତ । କର୍ପୂରମଞ୍ଜରୀରେ ମହାରାଣୀ ବିଭ୍ରମଲେଖାଙ୍କର ଚରିତ୍ର ଠିକ୍ ସେହିପରି ହୋଇଛି । ତଥାପି ଆଦର୍ଶ ପତ୍ନୀଭାବରେ ତାଙ୍କର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ସେ ଧର୍ମପରାୟଣା, ଦେବପୂଜା, ଉପାସନାଦି ନିୟମିତ ପାଳନ କରନ୍ତି ଏବଂ ଉତ୍ସବମାନଙ୍କରେ ରାଜାଙ୍କୁ ଯୋଗଦେବା ପାଇଁ ନିମନ୍ତ୍ରଣ କରନ୍ତି । କର୍ପୂରମଞ୍ଜରୀଙ୍କୁ ନିଜର ସାନ ଭଉଣୀ ଜାଣି ସେ ଅତ୍ୟନ୍ତ ସ୍ନେହ କରିଛନ୍ତି । ଏପରିକି ତାଙ୍କୁ ନିଜ ହସ୍ତରେ ବିଭୂଷିତ କରି ଦୋଳାରେ ଝୁଲାଇଛନ୍ତି । ଏଥିରୁ ତାଙ୍କର ସ୍ନେହଶୀଳତାର ପରିଚୟ ମିଳେ । ଅବଶ୍ୟ ପରେ ରାଜା ଓ କର୍ପୂରମଞ୍ଜରୀଙ୍କ ମଧ୍ୟରେ ଗୁପ୍ତପ୍ରେମ ଥିବାର ଜାଣି ସେ କଠୋରତା ଅବଲମ୍ବନ କରିଛନ୍ତି । ଆଦର୍ଶ ପତ୍ନୀଭାବରେ ତାଙ୍କର ପ୍ରଧାନ ବୈଶିଷ୍ଟ୍ୟ ଯେ ସ୍ୱାମୀଙ୍କର ଚକ୍ରବର୍ତ୍ତୀ ପଦ ଲାଭ ନିମନ୍ତେ ଅନ୍ୟ ଏକ କନ୍ୟା ସହିତ ତାଙ୍କର ବିବାହ କରାଇବାକୁ ସେ ପଶ୍ଚାତ୍‌ପଦ ହୋଇନାହାନ୍ତି ।

## ଭୈରବାନନ୍ଦ

ଭୈରବାନନ୍ଦ ଜଣେ ଅଦ୍ଭୁତ ସିଦ୍ଧିସମ୍ପନ୍ନ କୌଳିକ-ମତାବଲମ୍ବୀ, ଶିବଉପାସକ, ତାନ୍ତ୍ରିକ ଯୋଗୀ । ମଦ୍ୟପାନ, ମାଂସ-ଭୋଜନ, ନାରୀପ୍ରୀତି ଏବଂ ରଣ୍ଡୀ, ଚଣ୍ଡୀ ଦୀକ୍ଷିତା ସ୍ତ୍ରୀମାନଙ୍କୁ ଧର୍ମପତ୍ନୀରୂପେ ଗ୍ରହଣ ଇତ୍ୟାଦି ତାଙ୍କର ଧର୍ମମତ ବୋଲି ତାଙ୍କ ନିଜ ଉକ୍ତିରୁ ଜଣାପଡ଼େ । ବେଦାଧ୍ୟୟନ, ଯଜ୍ଞକର୍ମ ପ୍ରଭୃତି ବୈଦିକ ନୀତିରେ ତାଙ୍କର ବିଶ୍ୱାସ ନାହିଁ । ତନ୍ତ୍ରବଳରେ ଅସାଧ୍ୟ ସାଧନ

କରିବାର ଶକ୍ତି ସେ ହାସଲ କରିଛନ୍ତି । ତନ୍ତ୍ରବଳରେ ପରମସୁନ୍ଦରୀ କର୍ପୂରମଞ୍ଜରୀଙ୍କୁ ସୁଦୂର କୁନ୍ତଳ ଦେଶରୁ ଆଣି ରାଜା ଚନ୍ଦ୍ରପାଳଙ୍କ ସମ୍ମୁଖରେ ଉପସ୍ଥିତ କରାଇଛନ୍ତି । ରାଜା ଓ କର୍ପୂରମଞ୍ଜରୀଙ୍କ ପରସ୍ପର ଦର୍ଶନ ତାଙ୍କର ଯୋଗୁଁ ସମ୍ଭବ ହୋଇଛି ଏବଂ ତାଙ୍କରି ଇଚ୍ଛାରେ ଉଭୟଙ୍କର ବିବାହ ସମ୍ପନ୍ନ ହୋଇଛି । ତେଣୁ ନାଟିକାରେ ଭୈରବାନନ୍ଦଙ୍କର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

ଭୈରବାନନ୍ଦ ଏକ ବିଶିଷ୍ଟ ଐନ୍ଦ୍ରଜାଳିକ ବୋଲି କେତେକ ଆଲୋଚକ ( କନୋ, ଲାନ୍‌ମ୍ୟାନ୍ ପ୍ରମୁଖ ) ମତ ଦେଇଛନ୍ତି । କିନ୍ତୁ ଏ ମତ ଭ୍ରମପୂର୍ଣ୍ଣ ବୋଲି ବୋଧହୁଏ । କାରଣ କର୍ପୂରମଞ୍ଜରୀ ଯେଉଁ ସମୟରେ ଲିଖିତ, ସେ ସମୟରେ ଭାରତରେ ତନ୍ତ୍ରର ଖୁବ୍ ପ୍ରଭାବ ଥିଲା । ତାନ୍ତ୍ରିକ ଯୋଗୀମାନେ ଅସାଧ୍ୟ ସାଧନ କରିବାର ଶକ୍ତିଲାଭ କରିଥିଲେ । ଆଧ୍ୟାତ୍ମିକ ଦୃଷ୍ଟିରୁ ମଧ୍ୟ ସେମାନଙ୍କର କମ୍ ସମ୍ମାନ ନ ଥିଲା । ଲୋକମାନେ, ଏପରିକି ରାଜା ମହାରାଜାମାନେ ସେମାନଙ୍କୁ ଗୁରୁରୂପେ ପୂଜା କରୁଥିଲେ । ଆଲୋଚ୍ୟ ନାଟିକାରେ ମହାରାଣୀ ବିଭ୍ରମଲେଖା ଭୈରବାନନ୍ଦଙ୍କୁ ନିଜର ଗୁରୁକରି ତାଙ୍କଠାରୁ ଦୀକ୍ଷାଗ୍ରହଣ କରିଛନ୍ତି । ଏଥିରୁ ଭୈରବାନନ୍ଦଙ୍କର ଆଧ୍ୟାତ୍ମିକ ମହତ୍ତ୍ୱ ପରିସ୍ଫୁଟ । ଭୈରବାନନ୍ଦ ଯଦି କେବଳ ଜଣେ ବିଶିଷ୍ଟ ଯାଦୁକର ହୋଇଥାନ୍ତେ, ତେବେ ମହାରାଣୀ ତାଙ୍କୁ ଗୁରୁକରି ପୂଜା କରି ନ ଥାନ୍ତେ ।

ଭୈରବାନନ୍ଦଙ୍କର ଉକ୍ତି ସାଧାରଣତଃ ଅର୍ଥନୈତିକ ଜଣାପଡ଼େ । ମାତ୍ର ତନ୍ତ୍ର ସମ୍ପ୍ରଦାୟର ମତ ଆଲୋଚନା କଲେ ତାହା ସେପରି ବୋଧହେବ ନାହିଁ । ସନ୍ନ୍ୟାସଧର୍ମଠାରୁ ତନ୍ତ୍ରମତ ପୃଥକ୍ । ତନ୍ତ୍ର ମତାବଲମ୍ବୀମାନେ ମଦ୍ୟପାନ, ମାଂସଭୋଜନ, ନାରୀପ୍ରୀତି ପ୍ରଭୃତିର ଆବଶ୍ୟକତା ସ୍ୱୀକାର କରୁଥିଲେ । ମୁକ୍ତିପାଇଁ କଠୋର

ସଂଯମ ଅନାବଶ୍ୟକ, ସମ୍ଭୋଗ ମାଧ୍ୟମରେ ମଧ୍ୟ ମୁକ୍ତିଲାଭ କରି ହେବ, ଏହା ସେମାନଙ୍କର ମତ ଥିଲା । ତନ୍ତ୍ରର ଏକ ସ୍ୱତନ୍ତ୍ର ପଦ୍ଧତି ଥିଲା ଏବଂ ସେଥିରେ ଯଥେଷ୍ଟ ଆଧ୍ୟାତ୍ମିକ ଉନ୍ନତି ସଙ୍ଗେ ସଙ୍ଗେ ଅସାଧ୍ୟ ସାଧନ କରିବାର କ୍ଷମତା ମଧ୍ୟ ଲାଭ କରାଯାଇ ପାରୁଥିଲା ।

ଭୈରବାନନ୍ଦଙ୍କର "ଆମ୍ଭେ-ନାରୀ ପ୍ରୀତି କରୁଁ । ରଣ୍ଡୀ, ଚଣ୍ଡୀ, ତନ୍ତ୍ରଦୀକ୍ଷିତା ସ୍ତ୍ରୀମାନେ ଆମ୍ଭର ଧର୍ମପତ୍ନୀ" ଏଥିରୁ ଜଣାପଡ଼େ, ତନ୍ତ୍ରମତରେ ନିଜେ ପତ୍ନୀସମ୍ଭୋଗ କରିବାର ବିଧି ପ୍ରଚଳିତ ଥିଲା । ଆଜି ମଧ୍ୟ ତନ୍ତ୍ର ମତାବଲମ୍ବୀମାନେ ଜାତି-ଗୋତ୍ରର ବିଗ୍ଭର ନ ରଖି ବିବାହ କରୁଥିଲେ । କଠୋର ବର୍ଣ୍ଣବ୍ୟବସ୍ଥା, ବୈଦିକ କର୍ମକାଣ୍ଡ ତଥା ପରମ୍ପରା ସେମାନେ ମାନୁ ନ ଥିଲେ । ଭୈରବାନନ୍ଦଙ୍କ ଉକ୍ତିରୁ ପରନାରୀ-ପ୍ରୀତି ପ୍ରଭୃତି ଅନୈତିକ ବ୍ୟଭିଗ୍ଭରର ସୂଚନା ମିଳେ ବୋଲି କହିବା ଅସଙ୍ଗତ ଓ ଭ୍ରମପୂର୍ଣ୍ଣ ।

"ମନ୍ତଂ ନ ତନ୍ତଂ ନଂ" ( ଆମେ ମନ୍ତ୍ରତନ୍ତ୍ର ଜାଣୁ ନା ) ଏଥିରୁ ଭୈରବାନନ୍ଦ ତନ୍ତ୍ର ଜାଣନ୍ତି ନାହିଁ ବୋଲି ବୁଝିବା ଅନୁଚିତ । ଏହା ତାଙ୍କର କହିବାର ଭଙ୍ଗୀ କିମ୍ବା ବିନୟ-ଉକ୍ତି ହୋଇପାରେ ।

## ବିଦୂଷକ

ବିଦୂଷକ ଚରିତ୍ର ସାଧାରଣତଃ ହାସ୍ୟରସ ପାଇଁ ଉଦ୍ଦିଷ୍ଟ । 'କର୍ପୂରମଞ୍ଜରୀ'ରେ ତାହାହିଁ ହୋଇଛି । ବିଦୂଷକ କପିଞ୍ଜଳ ପ୍ରକୃତରେ ବୁଦ୍ଧିମାନ୍ ଓ ପଣ୍ଡିତ, କିନ୍ତୁ କେବଳ ହାସ୍ୟରସର ପରିବେଷଣ ପାଇଁ ସେ ବିଚକ୍ଷଣା ସହିତ ମୂର୍ଖ, ନିର୍ବୋଧ ଭଳି ବ୍ୟବହାର କରିଛନ୍ତି । ରାଜାଙ୍କୁ କର୍ପୂରମଞ୍ଜରୀଙ୍କ ଚିନ୍ତାରୁ ନିବୃତ୍ତ କରିବା ପାଇଁ ସେ ଯେଉଁ ଅଦ୍ଭୁତ ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି, ତାହା ତାଙ୍କର ବିଚକ୍ଷଣତା ଓ ହାସ୍ୟରସିକତାର ପରିଚୟ ଦିଏ । ରାଜା ଓ କର୍ପୂରମଞ୍ଜରୀଙ୍କର ମିଳନରେ ମଧ୍ୟ ସେ ଯଥେଷ୍ଟ ସାହାଯ୍ୟ

କରିଛନ୍ତି । ତାଙ୍କର ପୌଢ଼ସ୍ୱଭାବ, ବିଚିତ୍ର ଉକ୍ତି, ବିପରୀତ ବ୍ୟବହାର ପ୍ରଭୃତି ଅଳଙ୍କାର-ଶାସ୍ତ୍ରାନୁମୋଦିତ ଏବଂ ଯଥେଷ୍ଟ ଆମୋଦଦାୟକ ହୋଇଅଛି ।

— — —

## ରାଜଶେଖରଙ୍କ ବ୍ୟକ୍ତିତ୍ୱ

ରାଜଶେଖର ମହୀୟସୀ କବି ପ୍ରତିଭାର ଅଧିକାରୀ ଥିଲେ । କର୍ପୂରମଞ୍ଜରୀର ପ୍ରସ୍ତାବନାରେ ସେ ନିଜେ ନିଜର ଗୁଣଗାନ ନ କରି ନିଜ ସମ୍ବନ୍ଧରେ କବି ଅପରାଜିତଙ୍କ ମନ୍ତବ୍ୟ ଉଦ୍ଧୃତ କରିଛନ୍ତି । ଏଥିରୁ ଜଣାଯାଏ, ସମସାମୟିକ କବି ଓ ବିଦ୍ୱାନ୍‌ମାନଙ୍କଦ୍ୱାରା ସେ ଅତ୍ୟନ୍ତ ପ୍ରଶଂସିତ ହୋଇଥିଲେ । ତାଙ୍କର ପ୍ରତିଭା ଥିଲା କାବ୍ୟଧର୍ମୀ । ତେଣୁ ତାଙ୍କ ନାଟକମାନଙ୍କରେ କାବ୍ୟ-ଉପାଦାନ ଭରି ରହିଛି । ଲଳିତ, ମଧୁର ଛନ୍ଦରେ ଗଭୀର ଭାବବ୍ୟଞ୍ଜକ ବର୍ଣ୍ଣନା-ବୈଭବ ରାଜଶେଖରଙ୍କର ପ୍ରଧାନ ବିଶେଷତ୍ୱ । ନାଟ୍ୟକାର ଭାବରେ ସେ ବିଶେଷ ଗୌରବର ଅଧିକାରୀ ନୁହନ୍ତି । କାରଣ, ସଫଳ ନାଟକର ଦୁଇଟି ମୁଖ୍ୟ ଉପାଦାନ—ଘଟଣାର ଗତିଶୀଳତା ଓ ବାସ୍ତବ ଚରିତ୍ରଚିତ୍ରଣ ପ୍ରତି ସେ ଯଥୋଚିତ ଦୃଷ୍ଟି ଦେଇନାହାନ୍ତି । କିନ୍ତୁ ସୁନ୍ଦର ଦୃଶ୍ୟଯୋଜନା ଓ ନୃତ୍ୟଗୀତର ପ୍ରୟୋଗ ଦିଗରେ ସେ ଯଥେଷ୍ଟ କୃତିତ୍ୱ ଦେଖାଇଛନ୍ତି । ତଥାପି ତାଙ୍କର ନାଟ୍ୟଜାତୀୟ ରଚନାମାନଙ୍କରେ ନାଟ୍ୟକୁଶଳତା ଅପେକ୍ଷା କାବ୍ୟକୁଶଳତା ଅଧିକ ପରିସ୍ଫୁଟ ।

ଭାସ, କାଳିଦାସ, ଭବଭୂତି ପ୍ରଭୃତି କବିମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ରଚନା-ଧାରା ରାଜଶେଖରଙ୍କ ପ୍ରତିଭାକୁ ପ୍ରଭାବିତ କରିଛି । ବିଷୟବସ୍ତୁ ଦୃଷ୍ଟିରୁ ସେ ପୂର୍ବବର୍ତ୍ତୀ କବିମାନଙ୍କଠାରେ ବିଶେଷ ଭାବେ ଋଣୀ । କର୍ପୂରମଞ୍ଜରୀର ବିଷୟବସ୍ତୁରେ ଭାସଙ୍କ ସ୍ୱପ୍ନବାସବଦତ୍ତା

ନାଟକ ଏବଂ ଶ୍ରୀହର୍ଷଙ୍କ ରତ୍ନାବଳୀ ନାଟିକାର ପ୍ରଭାବ ସ୍ପଷ୍ଟ ; ତଥାପି ରାଜଶେଖର ପରମ୍ପରାର ଅନ୍ଧ ଅନୁସରଣକାରୀ ନୁହନ୍ତି । ତାଙ୍କର କଳ୍ପନାବିଳାସ ଓ ଭାବସମ୍ପଦ ଅଭିନବ, ରଚନାରୀତି ସ୍ୱତନ୍ତ୍ର । ପୂର୍ବରୁ ଗତାନୁଗତିକତାର କଠୋର ଶୃଙ୍ଖଳାରେ ବାନ୍ଧି-ହୋଇ ସଂସ୍କୃତ-ସାହିତ୍ୟ ମୃତପ୍ରାୟ ହୋଇ ଆସୁଥିଲା । କିନ୍ତୁ ରାଜଶେଖରଙ୍କ ନବୀନ ପ୍ରତିଭାର କାଉଁରୀ ସ୍ପର୍ଶରେ ତାହା ପୁଣି ନୂତନ ପ୍ରାଣପ୍ରାଚୁର୍ଯ୍ୟ ଲାଭ କରି ହସିଉଠିଲା ।

ସାହିତ୍ୟ ସମାଲୋଚନାର ଇତିହାସରେ ମଧ୍ୟ ରାଜଶେଖରଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିଖିତ । ଏ ଦିଗରେ ସେ ବିଶେଷ ଗୌରବର ଅଧିକାରୀ । ସାହିତ୍ୟ ସମାଲୋଚନାର ଗତାନୁଗତିକ ରୀତି ପରିହାର କରି ସେ ନୂତନ ଆଲୋକର ସନ୍ଧାନ ଦେଇଛନ୍ତି । ଆଗରୁ କାବ୍ୟର ସ୍ୱରୂପ କଅଣ, ଶରୀର କଅଣ, ଧ୍ୱନି, ରୀତି, ବକ୍ରୋକ୍ତି, ରସ ଓ ଅଳଙ୍କାର—ଏମାନଙ୍କ ମଧ୍ୟରୁ କାବ୍ୟର ଆତ୍ମାସ୍ଥାନୀୟ ହେବାକୁ କିଏ ବେଶି ଉପଯୁକ୍ତ, ଇତ୍ୟାଦି କେତେଗୋଟି ମାତ୍ର ବିଷୟରେ ବାଦାନୁବାଦପୂର୍ଣ୍ଣ ଆଲୋଚନା ଚାଲି ଆସୁଥିଲା । କିନ୍ତୁ ରାଜଶେଖର ଭିନ୍ନ ରୀତି ଗ୍ରହଣ କରି ନିଗୂଢ଼ ତଥା ଅତ୍ୟାବଶ୍ୟକ ତତ୍ତ୍ୱମାନ ସାହିତ୍ୟ ସାମାଲୋଚନାର ଅନ୍ତର୍ଭୁକ୍ତ କଲେ । କବି କି ଶକ୍ତି, ଉପାଦାନ ଦେଇ କାବ୍ୟ ରଚନା କରନ୍ତି, ସେ କେଉଁ କେଉଁ ବିଭିନ୍ନ ଶାସ୍ତ୍ରରେ ପାରଦର୍ଶୀ ହେବା ଉଚିତ, ଅନ୍ୟ କବିଙ୍କର ଅନୁକରଣ ବା ଅନୁସରଣ କଲାବେଳେ କି ନୀତି ଅବଲମ୍ବନ କରିବା ଉଚିତ, କବୟିତ୍ରୀ ଓ ଭାବୟିତ୍ରୀ ଶକ୍ତିର କି ଆବଶ୍ୟକତା, କବିଙ୍କର ଓ ରାଜାଙ୍କର କର୍ତ୍ତବ୍ୟ କଅଣ, ଇତ୍ୟାଦି ବିଭିନ୍ନ ଯଥାର୍ଥ ତତ୍ତ୍ୱରେ ତାଙ୍କ ରଚିତ କାବ୍ୟବିଚାରଗ୍ରନ୍ଥ 'କାବ୍ୟମୀମାଂସା' ଅତ୍ୟନ୍ତ ଉପାଦେୟ ହୋଇଅଛି । ଯଦି ଏହାର ଅବଶିଷ୍ଟ ସତର ଅଂଶ ମିଳନ୍ତା,

ତାହାହେଲେ ରାଜଶେଖରଙ୍କ ପ୍ରତିଭାର ପୂର୍ଣ୍ଣପରିଚୟ ମିଳିବା ସଙ୍ଗେ ସଙ୍ଗେ ଭାରତୀୟ ସମାଲୋଚନା ସାହିତ୍ୟ ସମୃଦ୍ଧ ହୁଅନ୍ତା।

ପ୍ରାକୃତଭାଷାକୁ ସାହିତ୍ୟର ପୂର୍ଣ୍ଣ ମାଧ୍ୟମରୂପେ ଗ୍ରହଣକରି ରାଜଶେଖର ନିଜର ଉଦାର ସାର୍ବଜନୀନ ମନୋବୃତ୍ତିର ପରିଚୟ ଦେଇଛନ୍ତି । କିନ୍ତୁ ତାଙ୍କ ପରେ ପ୍ରାକୃତରେ ସାହିତ୍ୟ ଆଶାନୁରୂପେ ଉନ୍ନତି ପ୍ରାପ୍ତ ହୋଇନାହିଁ । ସଂସ୍କୃତର ଅଖଣ୍ଡ ପ୍ରଭାବ ଓ ସାହିତ୍ୟରେ ରକ୍ଷଣଶୀଳତା, ଏହାର ଦୁଇଟି ମୁଖ୍ୟ କାରଣ ।

ରାଜଶେଖରଙ୍କ ଶାସ୍ତ୍ରପାଣ୍ଡିତ୍ୟ ଅସାଧାରଣ ଥିଲା । ସେ ବେଦ, ବେଦାଙ୍ଗ, ଦର୍ଶନ, ଜ୍ୟୋତିଷ, ବ୍ୟାକରଣ, ଧର୍ମଶାସ୍ତ୍ର, ଶିଳ୍ପଶାସ୍ତ୍ର, କାବ୍ୟ, ନାଟକ ପ୍ରଭୃତି ବିଷୟରେ ପ୍ରଗାଢ଼ ଜ୍ଞାନ ଅର୍ଜନ କରିଥିଲେ । କାବ୍ୟମୀମାଂସାରେ ଆଲୋଚିତ ବିଷୟମାନଙ୍କରୁ ତାଙ୍କର ଅଗାଧ ଶାସ୍ତ୍ରଜ୍ଞାନର ପରିଚୟ ମିଳେ । ସେ ବିଭିନ୍ନ ଭାଷାରେ ମଧ୍ୟ ପ୍ରବୀଣ ଥିଲେ । ବଂଶପରମ୍ପରାର ମହତ୍ତ୍ୱ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲା । ଭାରତର ପ୍ରତ୍ୟେକ ରାଜ୍ୟ, ଗିରି, ନଦୀ, ବନ, ବିଭିନ୍ନ ରାଜ୍ୟର ଅଧିବାସୀ, ସେମାନଙ୍କର ଭାଷା, ବେଶଭୂଷା, ଚାଲିଚଳନ ପ୍ରଭୃତି ସହିତ ସେ ପରିଚିତ ଥିଲେ । ତେଣୁ ତାଙ୍କ ଗ୍ରନ୍ଥମାନଙ୍କରେ, ବିଶେଷତଃ କାବ୍ୟମୀମାଂସାରେ ସେ ତତ୍କାଳୀନ ଭାରତର ଯେଉଁ ଭୌଗୋଳିକ ବର୍ଣ୍ଣନା ଦେଇଛନ୍ତି, ତାହା ବର୍ତ୍ତମାନ ଐତିହାସିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଉପାଦେୟ ।

ରାଜଶେଖର ଏକାଧାରରେ ଜଣେ ମହାକବି, ମହାବିଦ୍ୱାନ୍ ଏବଂ ପ୍ରକୃଷ୍ଟ ସାହିତ୍ୟ ସମାଲୋଚକରୂପେ ଚିରଯଶସ୍ୱୀର ଯଶଲାଭ କରିଛନ୍ତି ।

———

# ପ୍ରଥମ ଯବନିକାନ୍ତର

ଯୁଗେ ଯୁଗେ ବୀଣାପାଣି ଲଭୁଥାନ୍ତି ଅର୍ଚ୍ଚନା
ବ୍ୟାସ ଆଦି ମହାକବି ହେଉଥାନ୍ତି ମୋଦମନା ।
ଆବର ସକଳ କବି- ଜନଙ୍କ ମଧୁର ବାଣୀ ।
ଲଭୁଥାଇ ସମାଦର ବିଦଗ୍ଧ ମନୋହାରିଣୀ । *
ବୈଦର୍ଭୀ, ମାଗଧୀ ପୁଣି ପାଞ୍ଚାଳୀ ରଚନା-ରୀତି **
ମାନସମୁକୁରେ ମୋର ପ୍ରତିଭାତ ହୋଇ ଦିଶି ।

* ବିଦଗ୍ଧ କଳାନିପୁଣ ବ୍ୟକ୍ତି ।

** ରୀତି-ରଚନାଶୈଳୀ । ବୈଦର୍ଭୀ ରୀତିରେ ମାଧୁର୍ଯ୍ୟ-ଗୁଣପ୍ରକାଶକ ବର୍ଣ୍ଣମାନ ବ୍ୟବହୃତ ହୁଏ, ରଚନା କୋମଳ ହୁଏ ଏବଂ ସମାସ ଆଦୌ ସ୍ଥାନ ପାଏ ନାହିଁ କିମ୍ବା ଖୁବ୍ ଅଳ୍ପସ୍ଥାନ ପାଏ । ମାଗଧୀ (ଗୌଡ଼ୀ)ରେ ଓଜୋ ଗୁଣବ୍ୟଞ୍ଜକ ବର୍ଣ୍ଣମାନ ବ୍ୟବହୃତ ହୁଏ । ସମାସର ଅଧିକ ପ୍ରୟୋଗ କରାଯାଏ ଏବଂ ରଚନା ଆଡ଼ମ୍ବରପୂର୍ଣ୍ଣ ହୁଏ । ପାଞ୍ଚାଳୀରେ ମାଧୁର୍ଯ୍ୟ ଓ ଓଜୋଗୁଣ ପ୍ରକାଶକ ବର୍ଣ୍ଣ ଭିନ୍ନ ଅନ୍ୟ ବର୍ଣ୍ଣଗୁଡ଼ିକର ବ୍ୟବହାର କରାଯାଏ ଏବଂ ପାଞ୍ଚ ଛଅ ପଦର ସମାସ ପ୍ରଯୁକ୍ତ ହୁଏ । ସାହିତ୍ୟ-ଦର୍ପଣରେ ବୈଦର୍ଭୀ ରୀତିର ଲକ୍ଷଣ ଯଥା—

କରନ୍ତୁ କାବ୍ୟ-କୋବଦେ ଗୀତ-ସୁଧା ଆସ୍ୱାଦନ
ଚକୋରଗଣ ଯେସନେ କରନ୍ତ ଚନ୍ଦ୍ରିକା ପାନ ।

ଆଉ ମଧ୍ୟ—

ଅନଙ୍ଗ ରତିଙ୍କ ପ୍ରଣୟୋଜ୍ଜ୍ୱଳବେ ନାହିଁ ଆଳିଙ୍ଗନ ବିଳାସ
ଘନ ଘନ ତନୁ-ତାଡ଼ନ ଆବର ତହିଁ ନ ହୁଅଇ ପ୍ରକାଶ
ସେ କେଳି, ଚୁମ୍ବନଗୃତ୍ତୁଶବହୀନ
ହେ ରସିକ ନରେ ଜଣାଅ ତାହାରେ ନିରନ୍ତର ଅଭିନନ୍ଦନ ।
ସୁରପ୍ରିୟ ଶଶୀ- ଖଣ୍ଡ ବିମଣ୍ଡିତ
ଦାକ୍ଷିଣ୍ୟ କେଳିଲାଳସୀ,
ଗିରିଶ ଗିରୀନ୍ଦ୍ର- ସୁତାଙ୍କ ସଙ୍ଗମ
ବିତରୁ ମଙ୍ଗଳରାଶି ।

ଜାହ୍ନବୀଙ୍କୁ ପତି ମସ୍ତକେ ଦେଖି ଗିରିନନ୍ଦିନୀ
ଈର୍ଷାବେଷଭରେ ହୁଅନ୍ତ ଯେବେ ଅଭିମାନିନୀ ।

---

ମାଧୁର୍ଯ୍ୟବ୍ୟଞ୍ଜକୈର୍ବର୍ଣ୍ଣୈ ରଚନା ଲଳିତାତ୍ମିକା ।
ଅବୃତ୍ତିରଳ୍ପବୃତ୍ତିର୍ବା ବୈଦର୍ଭି ରୀତିରିଷ୍ୟତେ ॥
ଗୌଡ଼ୀ ଲକ୍ଷଣ ଯଥା—
ଓଜଃ ପ୍ରକାଶକୈର୍ବର୍ଣ୍ଣୈ ର୍ବନ୍ଧ ଆଡ଼ମ୍ବରଃ ପୁନଃ ।
ସମାସ ବହୁଳା ଗୌଡ଼ୀ ।
ପାଞ୍ଚାଳୀ ଲକ୍ଷଣ ଯଥା—
ବର୍ଣ୍ଣୈଃ ଶେଷୈଃ ପୁନର୍ଦ୍ୱୟୋଃ
ସମସ୍ତ ପଞ୍ଚଷ ପଦୋ ବନ୍ଧଃ ପାଞ୍ଚାଳିକା ମତା ॥

ସେକାଳେ ଶଙ୍କର କପାଳେ    ରଖି ଅଞ୍ଜଳି-କର
ପ୍ରଣମନ୍ତ ଉମା ଚରଣ-    ପଦ୍ମେ ଥରକୁ ଥର ।
ଫୁଟିତ ଦ୍ବୁଅଳି ଅଞ୍ଜଳି    ମନ୍ଦାକିନୀର ମଧ୍ୟେ
ଜୋଛନା-ମୁକୁତା ଶୋଭିଲ    ଚନ୍ଦ୍ର ଶଶୀ-ଶୁକ୍ତିରେ ।
ଏମନ୍ତେ ଅମ୍ଳାନ ଅର୍ଘ୍ୟ କି    ଗିରିସୁତା ଚରଣେ
ଧରିବାରେ ହର ବାଢ଼ନ୍ତି    ଦେବେ ତୋଷ କାରଣେ ।
ସେ ପ୍ରଭୁ ପରମ ଈଶ୍ୱର    ଦେବ ଦେବ ଶଙ୍କର
ଗାଏ ଯୁଗେ ଯୁଗେ ଜଗତ    ଜୟଗାନ ତାଙ୍କର ।

ନାନ୍ଦୀ * ଗାନ ଶେଷ

ସୂତ୍ରଧାର—(ବୁଲି, ଅନ୍ତରାଳ ଅଡ଼କୁ ଚାହିଁ) ଆମର ନଟନଟୀବର୍ଗ କଅଣ ଅଭିନୟ ଆୟୋଜନରେ ଲାଗିଥିବା ପରି ଜଣା-ପଡ଼ୁଛନ୍ତି ! ସ୍ତ୍ରୀମାନଙ୍କ ମଧ୍ୟରୁ କିଏ ବିଭିନ୍ନ ପାତ୍ରଙ୍କ ନିମନ୍ତେ ଉପଯୁକ୍ତ ବସ୍ତ୍ର ସଜାଉଛନ୍ତି, କିଏ ଫୁଲମାଳ ଗୁନ୍ଥୁଛନ୍ତି, କିଏ ପଟଡ଼ଗୁଡ଼ିକୁ ଖୋଲୁଛନ୍ତି, କିଏ ବା ଚିତ୍ରପଟରେ ରଙ୍ଗ ଦେଉଛନ୍ତି । ହେଇ, ବଂଶୀବାଜିବା ଆରମ୍ଭ ହେଲା । ବୀଣା ତାରଗୁଡ଼ିକୁ ଠିକ୍ କରାଯାଉଛି । ତିନି ପ୍ରକାର ମୃଦଙ୍ଗ ସଜ୍ଜିତ ହେଲାଣି । ପରିଷ୍କୃତ ଉଜ୍ଜ୍ୱଳ କାଂସ୍ୟ-କରତାଳଗୁଡ଼ିକର ଝଣଝଣ ଶବ୍ଦ ଶୁଭିଲାଣି । ହେଇ, ଧ୍ରୁବାଗୀତ-ଆଳାପନା ଚାଲିଲା । ତା'ହେଲେ ପରିବାର ମଧ୍ୟରୁ କାହାକୁ ଡାକି ପଚାରେ, ଏହାର କାରଣ କଅଣ ।

---

* ବିଘ୍ନରେ ନାଟକ ସମ୍ପୂର୍ଣ୍ଣ ହେବାପାଇଁ ପ୍ରଥମେ ଯେଉଁ ମଙ୍ଗଳାଚରଣ ବୋଲାଯାଏ, ତାହାକୁ ନାନ୍ଦୀ କହନ୍ତି ।

( ଅନ୍ତରାଳକୁ ଗୃହ୍ଣୀ ଆସିବାର ସଙ୍କେତ ଦେଲେ ।)
(ପାରିପାର୍ଶ୍ୱିକଙ୍କର * ପ୍ରବେଶ)

ପାରି—ଆଦେଶ ଦିଅନ୍ତୁ ମହାଭାଗ !

ସୂତ୍ର—[ ଚିନ୍ତା କରି ] ଭୂତମାନେ ଅଭିନୟ ଆୟୋଜନରେ ଲାଗିଥିଲା ପରି ଦେଖାଯାଉଛି !

ପାରି—ମହାଭାଗ, ଏକ ସଟ୍ଟକ ନୃତ୍ୟରେ ଅଭିନୟ ଦେଖାଇବୁଁ ।

ସୂତ୍ର—ତା'ର କବି କିଏ ?

ପାରି—ଆପଣ କହନ୍ତୁ—ରଜନୀବଲ୍ଲଭ ଶିଖଣ୍ଡ ** କିଏ ? ଆଉ ରଘୁକୁଳଶିରୋମଣି ମହେନ୍ଦ୍ରପାଳଙ୍କ ଗୁରୁ କିଏ ?

ସୂତ୍ର—(ଚିନ୍ତା କରି) ଏ ପ୍ରଶ୍ନର ଉତ୍ତର·····( ପ୍ରକାଶ୍ୟରେ ) ରାଜଶେଖର ।

ପାରି—ସେ ଏହି ସଟ୍ଟକର କବି ।

ସୂତ୍ର—ସଟ୍ଟକ କଅଣ ?

---

* ପାରିପାର୍ଶ୍ୱିକ—ସୂତ୍ରଧାରଙ୍କ ପାର୍ଶ୍ୱଚର

** ରାଜା = ଚନ୍ଦ୍ର, ଶେଖର = ଶିରୋଭୂଷଣ । ରଜନୀବଲ୍ଲଭ = ଚନ୍ଦ୍ର, ଶିଖଣ୍ଡ = ଶିରୋଭୂଷଣ । ତେଣୁ 'ରାଜଶେଖର', ଏହି ନାମର ଅନ୍ୟ ପର୍ଯ୍ୟାୟ ହେଉଛି—'ରଜନୀବଲ୍ଲଭଶିଖଣ୍ଡ' ।

ପାର୍—( ସ୍ମରଣ କରି ) ପଣ୍ଡିତମାନେ କହିଛନ୍ତି—ସଠିକ ପ୍ରକୃତିଃ ନାଟିକାର ଅନୁରୂପ । କିନ୍ତୁ ଏଥିରେ କେବଳ ପ୍ରବେଶକ * ଓ ବିଷ୍କମ୍ଭକ ନ ଥାଏ ।

ସୂତ୍ର—(ଚିନ୍ତା କରି ) ଆଚ୍ଛା, କବି ସଂସ୍କୃତ ଛାଡ଼ି ପ୍ରାକୃତ ଭାଷାରେ କାହିଁକି ଏହା ରଚନା କଲେ ?

ପାର୍—ସର୍ବଭାଷାବିଶାରଦ ସେମାନେ କବି ହିଁ ନିଜେ କହିଛନ୍ତି—କୌଣସି ଭାଷାର ଶବ୍ଦ ଅନ୍ୟ ଭାଷାରେ ରୂପାନ୍ତରିତ ହେଲେ ମଧ୍ୟ ତାର ଅର୍ଥ ସମାନ ରହେ । ଯେଉଁ ଭାଷାରେ ଲେଖାଯାଉ ପଛେ, ଚମତ୍କାରପୂର୍ଣ୍ଣ ଉକ୍ତି ହିଁ କାବ୍ୟ ।

ଆଉ ମଧ୍ୟ—

ସଂସ୍କୃତ ଭାଷାର ରଚନା କର୍କଶ, କିନ୍ତୁ ପ୍ରାକୃତ ଭାଷାରରଚନା କୋମଳ ହୁଏ । ପୁରୁଷ ଓ ମହିଳାଙ୍କ ମଧ୍ୟରେ ଯେପରି ପାର୍ଥକ୍ୟ, ସଂସ୍କୃତ ଓ ପ୍ରାକୃତ ଭାଷାର ରଚନା ମଧ୍ୟରେ ସେହିପରି ପାର୍ଥକ୍ୟ ।

ସୂତ୍ର—ଆଚ୍ଛା, କବି ନିଜ ସମ୍ବନ୍ଧରେ କାହିଁକି କିଛି ବର୍ଣ୍ଣନା କରି ନାହାନ୍ତି ?

---

* ଆଗରୁ ଘଟିଯାଇଥିବା କିମ୍ବା ପରେ ଘଟିବାକୁ ଥିବା କୌଣସି ଘଟଣାକୁ ଦୁଇଟି ଅଙ୍କର ମଝିରେ ନୀଚ ପାତ୍ରଙ୍କ ମୁଖରେ ସୂଚାଇ ଦିଆଗଲେ ତାହାକୁ ପ୍ରବେଶକ କହନ୍ତି । ପ୍ରବେଶକ ପ୍ରଥମ ଅଙ୍କର ମୂଳରେ ରହି ନପାରେ ।

ଆଗରୁ ଘଟିଯାଇଥିବା କିମ୍ବା ପରେ ଘଟିବାକୁ ଥିବା କୌଣସି ଘଟଣାକୁ ଅଙ୍କର ଆରମ୍ଭରେ ମଧ୍ୟମ ଶ୍ରେଣୀର ପାତ୍ରଙ୍କ ମୁଖରେ ସୂଚାଇ ଦିଆଗଲେ ତାହାକୁ ବିଷ୍କମ୍ଭକ କହନ୍ତି । ବିଷ୍କମ୍ଭକ ପ୍ରଥମ ଅଙ୍କର ଆରମ୍ଭରେ ପ୍ରଯୁକ୍ତ ହୋଇପାରେ ।

ପାର—ଶୁଣନ୍ତୁ । ମୃଗାଙ୍କଲେଖା ନାମକ କଥାର ରଚୟିତା ସମସାମୟିକ କବି ଅପରାଜିତ ତାଙ୍କ ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି—

ଅଭିନବ କବି, କବିମାନଙ୍କ ଶିରୋମଣି, ନିର୍ଭୟରାଜ ମହେନ୍ଦ୍ରପାଳଙ୍କ ଗୁରୁ—ଏହିପରି କ୍ରମବର୍ଦ୍ଧିତ ଉତ୍କର୍ଷ ଯୋଗ୍ୟ ରାଜଶେଖର ମହାନ୍ ହୋଇଛନ୍ତି । ଯାହାଙ୍କର ନିଷ୍କଳଙ୍କ ଗୁଣଗଣ ଚନ୍ଦ୍ରପରି ତ୍ରିଭୁବନ ଉଜ୍ଜ୍ୱଳ କରିଛି, ସେହି ରାଜଶେଖର ଏହି ସଟ୍ଟକର ରଚୟିତା ।

ସୂତ୍ର—ଆଚ୍ଛା, କାହାର ଆଦେଶରେ ତୁମ୍ଭେମାନେ ଏ ଅଭିନୟର ଆୟୋଜନ କରୁଛ ?

ପାର—ଚୌହାନକୁଳର ଶିରୋଭୂଷଣସ୍ୱରୂପା, କବୀନ୍ଦ୍ର ରାଜଶେଖରଙ୍କ ପତ୍ନୀ ଅବନ୍ତୀସୁନ୍ଦରୀ ସ୍ୱାମୀଙ୍କର ଏହି ରଚନା ଅଭିନୀତ କରାଇବାକୁ ଚାହାନ୍ତି ।

ପୃଥିବୀର ଚନ୍ଦ୍ର ସ୍ୱରୂପ ରାଜା ଚନ୍ଦ୍ରପାଳ ଚକ୍ରବର୍ତ୍ତୀ ପଦ ପାଇବା ନିମନ୍ତେ କୁନ୍ତଳ ଦେଶର ରାଜକନ୍ୟା କର୍ପୂରମଞ୍ଜରୀଙ୍କୁ ବିବାହ କରିଛନ୍ତି—ଏହା ହେଉଛି ଏକ ରସପୂର୍ଣ୍ଣ ସଟ୍ଟକର ବିଷୟବସ୍ତୁ ।

ତେଣୁ ଆପଣ ଆସନ୍ତୁ । ଏହା ପରେ ଯାହା କର୍ତ୍ତବ୍ୟ, ତାହା କରିବା । କାରଣ, ଆପଣଙ୍କ ପତ୍ନୀ 'ମହାରାଣୀ' ଭୂମିକା ଗ୍ରହଣ କରି ଯବନିକା ଭିତରେ ପ୍ରସ୍ତୁତ ହୋଇ ରହିଛନ୍ତି ।

(କ୍ରମେ କ୍ରମେ ନିଷ୍କ୍ରାନ୍ତ ହେଲେ)

( ପ୍ରସ୍ତାବନା * ଶେଷ )

(ରଜା, ରାଣୀ, ବିଦୂଷକ ଏବଂ ଖଟଣିରେ ନିଯୁକ୍ତ ପରିଜନ-ବର୍ଗଙ୍କର ପ୍ରବେଶ । ସମସ୍ତେ ଯଥାଯୋଗ୍ୟ ଆସନରେ ବସିଲେ ।)

ରଜା—ଦେବି, ଦାକ୍ଷିଣାତ୍ୟବିଜନନନ୍ଦିନୀ, ବସନ୍ତର ଆଗମନରେ ତୁମେ ବେଶ୍ ପ୍ରଫୁଲ୍ଲ ଦେଖାଯାଉଛ ।

ଯେହେତୁ ବାଳାମାନେ ବକ୍ଷୋଜ୍ଜ୍ୱରେ ଅଧିକ ବିଲେପନ-ଦ୍ରବ୍ୟ ଲଗାଉନାହାନ୍ତି, ସୁଗନ୍ଧ ତେଲରେ ବେଣୀ ବାନ୍ଧୁନାହାନ୍ତି, ଦେହରେ ଉତ୍ତରୀୟ ପରିଧାନ କରୁନାହାନ୍ତି, ଏପରି କି ମୁଖରେ ଘନ କୁଙ୍କୁମରାଗ ଲେପନ କରିବା ପ୍ରତି ମଧ୍ୟ ଧ୍ୟାନ ଦେଉନାହାନ୍ତି, ତେଣୁ ଜଣାଯାଉଛି, ଶୀତଋତୁକୁ ବଳରେ ପରାସ୍ତ କରି ବସନ୍ତ-ମହୋତ୍ସବ ଉପସ୍ଥିତ ହୋଇଗଲାଣି ।

ରାଣୀ – ମହାରାଜ, ମୁଁ ମଧ୍ୟ ଆପଣଙ୍କ ପରି ବସନ୍ତବର୍ଣ୍ଣନା କରିବି ।

ଶୀତଋତୁ ଚାଲିଯାଇଥିବାରୁ ନରନାରୀମାନଙ୍କର ଦନ୍ତ ରଶ୍ମି ପରି ଉଜ୍ଜ୍ୱଳ ଦିଶିଲାଣି । ଅଳ୍ପ ଅଳ୍ପ ଚନ୍ଦନ ବୋଳିହେବା ପାଇଁ ସେମାନଙ୍କର ମନ ବଳିଲାଣି । ଏବେ ସେମାନେ ଗୃହର ମଝି ପ୍ରକୋଷ୍ଠରେ ଶୟନ କରୁଛନ୍ତି ଏବଂ ରାତିରେ ଶୀତ ଲାଗିବା ଆଶଙ୍କାରେ ପାଦ ଆଡ଼କୁ ଦୁଆର ଖୋଲାଇ ଦେଉଛନ୍ତି ।

* ( ଅନ୍ତରାଳରୁ )

୧ମ ଭାଟ—ଜୟ ପୂର୍ବଦିଗ-ଅଙ୍ଗନା- ରସିକ ହେ ରାଜନ,
ଚମ୍ପାନଗରୀର ରୁଚିର ଚମ୍ପା-କର୍ଣ୍ଣ ଭୂଷଣ ।

---

* ନାଟକର ପ୍ରକୃତ ବିଷୟବସ୍ତୁ ଆରମ୍ଭ ହେବା ପୂର୍ବରୁ ସୂତ୍ରଧାର ଆସି ନଟୀ (ସୂତ୍ରଧାରଙ୍କ ପତ୍ନୀ), ବିଦୂଷକ କିମ୍ବା ପାରି-ପାର୍ଶ୍ୱିକଙ୍କ ସହିତ ନାଟକ, ନାଟ୍ୟକାର ପ୍ରଭୃତିଙ୍କ ସହିତ ଆଳାପ କରନ୍ତି । ନାଟକର ଏହି ପ୍ରାରମ୍ଭିକ ଅଂଶକୁ ପ୍ରସ୍ତାବନା କହନ୍ତି ।

ଗଉଡ଼ଦେଶ ଦେବ, ବଜସ୍ୱ — ନଲ ଅନାୟାସରେ,
ଆକ୍ରମିଲ କାମରୂପକୁ — ମହାବିକ୍ରମ ଭରେ ।
ହରିକେଳୀ ରାଜ୍ୟ ମଣିମା, — କେଳି କର ଆନନ୍ଦେ,
ବରି କାଞ୍ଚନର କାନ୍ତି କ — ତବ ଝିଟକ ନନ୍ଦେ ।
ଅଙ୍ଗେ ଅଙ୍ଗେ ତବ ଅପୂର୍ବ — ଆଭା କ ରମଣୀୟ,
ହେଉ ସୁଖପ୍ରଦ ତୁମ୍ଭଙ୍କୁ — ଏହି ମଧୁ ସମୟ । *

ବର୍ତ୍ତମାନ ବସନ୍ତ କାଳରେ —

ମଳୟ ପର୍ବତର ଶୀତଳ ପବନ ପାଣ୍ଡ୍ୟଦେଶ-ରମଣୀମାନଙ୍କର ଗଣ୍ଡସ୍ଥଳରେ ପୁଲକ ଜାତ କରି, କାଞ୍ଚୀବାଳାମାନଙ୍କର ମାନ ଦ୍ୱିଖଣ୍ଡିତ କରି, ଚୋଳଦେଶ ଚପଳା ଅଙ୍ଗନାମାନଙ୍କର ରତିସ୍ପୃହା ବଢ଼ାଇ, କର୍ଣ୍ଣାଟ-ସ୍ତ୍ରୀମାନଙ୍କର କେଶପାଶ ନଚାଇ ଏବଂ କୁନ୍ତଳ କାମିନୀମାନଙ୍କୁ ପ୍ରିୟଜନଙ୍କ ସହିତ ପ୍ରୀତି-ଆବଦ୍ଧ କରି ବହୁଅଛି ।**

---

* ଚମ୍ପା — ପୂର୍ବଭାରତର ଏକ ପ୍ରାଚୀନ ନଗରୀ, ଆଧୁନିକ ଭାଗଲପୁର । ଗଉଡ଼ — ବଙ୍ଗଳାର ଏକ ପ୍ରାଚୀନ ନଗର, ଆଧୁନିକ ବର୍ଦ୍ଧମାନ । କାମରୂପ — ଆସାମ । ହରିକେଳୀ — ସମ୍ଭବତଃ ବଙ୍ଗଳାର ଏକ ଅଂଶ ଥିଲା ।

** ପାଣ୍ଡ୍ୟ — ଭାରତର ଦକ୍ଷିଣ ସୀମାରେ ଅବସ୍ଥିତ ପ୍ରାଚୀନ ରାଜ୍ୟ । ବର୍ତ୍ତମାନର ମଦୁରାଇ ଏବଂ ତିନେବେଲ୍ଲୀ ଜିଲ୍ଲା ଏହାର ଅନ୍ତର୍ଗତ ଥିଲା । କାଞ୍ଚୀ — ପ୍ରାଚୀନ ଚୋଳରାଜ୍ୟର ରାଜଧାନୀ । ବର୍ତ୍ତମାନ ମାନ୍ଦ୍ରାଜର ଦକ୍ଷିଣ-ପଶ୍ଚିମରେ ୪୨ ମାଇଲ ଦୂରରେ ଅବସ୍ଥିତ କାଞ୍ଜିବରମ୍ । ଚୋଳ — ଦାକ୍ଷିଣାତ୍ୟର ଏକ ପ୍ରାଚୀନ ରାଜ୍ୟ । ଏହାର ଆୟତନ ଅତ୍ୟନ୍ତ ବିସ୍ତୃତ ଥିଲା । କିନ୍ତୁ ରାଜଶେଖରଙ୍କ ସମୟରେ ଏହାର ଅନ୍ତର୍ଗତ ଥିଲା ଆଧୁନିକ ତାଞ୍ଜୋର

୨ୟ ଭାଟ—ଚମ୍ପକପୁଷ୍ପ ମହାରାଷ୍ଟ୍ରୀ ସ୍ତ୍ରୀମାନଙ୍କର କୁଙ୍କୁମବୋଳା ଗଣ୍ଡସ୍ଥଳ ପରି ଦିଶିଲାଣି । ମଲ୍ଲୀଲତାରେ ଅଳ୍ପମଥିତ ଦୁଗ୍ଧ ପରି ସୁନ୍ଦର କଢ଼ିମାନ ବିକଶିତ ହେଲାଣି । ପଳାଶ ଫୁଲର ମୂଳ ଶ୍ୟାମଳ ଦିଶୁଥିବାରୁ ଏବଂ ଅଗରେ ଭ୍ରମର ବସିଥିବାରୁ ବୋଧହେଉଛି—ସତେ ଯେପରି ଦୁଇଟି ଭ୍ରମର ଦୁଇ ପାଖରେ ବସି ମଧୁପାନ କରୁଛନ୍ତି ।

ରାଜା—ପ୍ରିୟା ବିଭ୍ରମଲେଖା, ମୁଁ ତୁମ ଉଦ୍ଦେଶ୍ୟରେ ବସନ୍ତ ବର୍ଣ୍ଣନା କରୁଛି । କିନ୍ତୁ କାଞ୍ଚନଚଣ୍ଡ, ରତ୍ନଚଣ୍ଡ ଭାଟଦୁହେଁ ଆମ ଦୁହିଁଙ୍କ ଉଦ୍ଦେଶ୍ୟରେ ବସନ୍ତ ବର୍ଣ୍ଣନା କରୁଛନ୍ତି ।

---

ଏବଂ ଆର୍କଟ ଜିଲ୍ଲା । କାଞ୍ଚୀନଗରୀ ଏହାର ରାଜଧାନୀ ଥିଲା । ରାଜଶେଖର ଅନେକସ୍ଥ ଚୋଳ ଏବଂ କାଞ୍ଚୀର ନାମ ପୃଥକ ଭାବରେ ଉଲ୍ଲେଖ କରିଛନ୍ତି । ପ୍ରାଚୀନ ଚୋଳ, ଚେର ଓ ପାଣ୍ଡ୍ୟ ରାଜ୍ୟ ବର୍ତ୍ତମାନ ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଗତ । କର୍ଣ୍ଣାଟ —ଆଧୁନିକ ମହୀଶୂର ଏବଂ କୁର୍ଗ ପ୍ରଭୃତି ଜିଲ୍ଲା ଏହି ରାଜ୍ୟର ଅନ୍ତର୍ଗତ ଥିଲା । କୁନ୍ତଳ—ଦାକ୍ଷିଣାତ୍ୟର ଏକ ପ୍ରାଚୀନ ରାଜ୍ୟ । କୃଷ୍ଣା ଓ ଗୋଦାବରୀ ମଧ୍ୟବର୍ତ୍ତୀ ଭୂଭାଗରେ ଏହି ରାଜ୍ୟ ବିସ୍ତୃତ ଥିଲା । କିନ୍ତୁ ରାଜଶେଖରଙ୍କ ସମୟରେ ସମଗ୍ର ବିଦର୍ଭ ରାଜ୍ୟ କିମ୍ବା ତାହାର କେତେକ ଅଂଶ କୁନ୍ତଳର ଅନ୍ତର୍ଗତ ଥିଲା ବୋଲି ଜଣାଯାଏ । କର୍ପୂରମଞ୍ଜରୀରେ କୁନ୍ତଳରେ ବିଦର୍ଭ ନାମକ ନଗର ଅଛି, ଏହି ଉକ୍ତି ଏହାର ପ୍ରମାଣ । ବିଦର୍ଭ ରାଜଶେଖରଙ୍କ ସମୟରେ ଆଧୁନିକ ବେରାରଠାରୁ ହାଇଦ୍ରାବାଦ ପର୍ଯ୍ୟନ୍ତ ବିସ୍ତୃତ ଏକ ରାଜ୍ୟ ଥିଲା ।

ଦେବ, ଏହି ବସନ୍ତ-ଉତ୍ସବ ତରୁଣୀମାନଙ୍କର ବିଳାସ ତଥା ଗର୍ବ ଉତ୍ପନ୍ନ କରୁଛି; ମଳୟ ପବନରେ ଦୋଳାୟିତ ଲତା-ନର୍ତ୍ତକୀମାନଙ୍କୁ ନୃତ୍ୟଶିକ୍ଷା ଦେଉଛି; କୋଇଲି କଣ୍ଠରେ ମଧୁର ପଞ୍ଚମସ୍ୱର ସୃଷ୍ଟି କରୁଛି ଏବଂ ନୂତନ ଶକ୍ତିଶାଳୀ କନ୍ଦର୍ପର ଧନୁଦ୍ୱାରା ମାନିନୀମାନଙ୍କର ମାନ ଖଣ୍ଡନ କରୁଛି । ବସୁଧା-ରମଣୀର ପ୍ରିୟବନ୍ଧୁ ଏହି ବସନ୍ତ-ଉତ୍ସବକୁ ତୁମେ ତୁମର ବିଶାଳ ଚକ୍ଷୁ ବିସ୍ତୃତ କରି ମନଇଚ୍ଛା ଦର୍ଶନ କର ।

ରାଣୀ—ଭଟ୍ଟ ଦୁହେଁ ଯଥାର୍ଥ ବର୍ଣ୍ଣନା କରିଛନ୍ତି । ପ୍ରକୃତରେ ମଳୟ ପବନ ବହିଲାଣି ।

ଚୈତ୍ର ପବନ ଲଙ୍କାନଗରୀର ତୋରଣମାଳା ଦୋହଲାଇ, ଅଗସ୍ତିଙ୍କ ଆଶ୍ରମରେ ଧୀର କମ୍ପିତ ଚନ୍ଦନବୃକ୍ଷ ଓ କର୍ପୂରଲତାର ସମ୍ପର୍କରୁ ସୁଗନ୍ଧଯୁକ୍ତ ହୋଇ, ମଞ୍ଜରୀଲତାମାନଙ୍କୁ କମ୍ପିତ କରି, ପାନଲତାମାନଙ୍କୁ ଧୀରେ ଧୀରେ ନଚାଇ ଏବଂ ତାମ୍ରପର୍ଣ୍ଣୀ ନଦୀ-ଜଳକୁ ଘନ ଚୁମ୍ବନ ଦେଇ ବହୁଅଛି ।

ଆଉ ମଧ—

"ମାନ ତ୍ୟାଗକର, ପ୍ରିୟଜନଙ୍କୁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଦେଖ, ଯେଉଁ ଯୌବନ ସ୍ତନର ପୃଥୁଳତା ସଂପାଦନ କରେ, ତାହା କେବଳ ପାଞ୍ଚ ଦଶ ଦିନ ପାଇଁ"—ଏହିପରି କୋଇଲିର ମଧୁର କୁହୁତାନ ଛଳରେ ଚୈତ୍ର-ମହୋତ୍ସବ କାମଦେବଙ୍କ ସର୍ବବ୍ୟାପୀ ଆଜ୍ଞାକୁ ବିଘୋଷିତ କଲପରି ଜଣାପଡ଼ୁଛି ।

ବିଦୂ—ଆହୋ ! ତୁମ ସମସ୍ତଙ୍କ ମଧ୍ୟରେ ମୁଁ ଗୋଟିଏ ମହାପଣ୍ଡିତ । ମୋ ଶ୍ୱଶୁରର ଶଶୁର ପଣ୍ଡିତମାନଙ୍କ ଘରେ ପୋଥିବୁହା କାମ କରୁଥିଲେ ।

ବିଚକ୍ଷଣା—ତା’ ହେଲେ ତ ଆପଣ ବଂଶପରମ୍ପରାରୁ ପାଣ୍ଡିତ୍ୟ ହାସଲ କରିଛନ୍ତି !

ବିଦୂ—ଆଲୋ ଦାସୀପୁଝି, ଭବିଷ୍ୟତ୍ ବେଶ୍ୟା, ଅଲକ୍ଷଣି, ମୂର୍ଖା, ମୁଁ କଅଣ ଏଡ଼େ ମୂର୍ଖ ଯେ ତୁ ବି ମତେ ଉପହାସ କରିବୁ ? ତୁ ପରପୁରୁଷମାନଙ୍କୁ ଭ୍ରଷ୍ଟ କରୁ, ବାଟରେ ଗଡ଼ୁ, ଭଅଁର ପରି ବାର ଜାଗା ବୁଲୁ, ମିଛରେ ଗୁଣ ପକାଉ, ଦୁଷ୍ଟରିଷ-ମାନଙ୍କ ସାଙ୍ଗରେ ଥାଉ । ତୋ ଚରିତ ସମସ୍ତଙ୍କୁ ଜଣା । ହାତ କଙ୍କଣ ଥାଉଁ ଥାଉଁ ଦର୍ପଣ କି ଦରକାର ?

ବିଚ—ହେଉ, ମୁଁ ସେଇଆ । ବସନ୍ତ ବର୍ଣ୍ଣନା କର୍ ତ ।

ବିଦୂ—ତୁ ପିଞ୍ଜରାବଦ୍ଧ ଶାରୀଭଳି ଖାଲି କୁର୍ କୁର୍ ହେବା ଜାଣୁ, ଆଉ କିଛି ଜାଣୁ ନା । ତେଣୁ ପ୍ରିୟମିତ୍ରଙ୍କ ଆଗରେ ଆଉ ମହାରାଣୀଙ୍କ ଆଗରେ ବସନ୍ତ ବର୍ଣ୍ଣନା କରିବି । କସ୍ତୁରୀ କୁ-ଗ୍ରାମରେ କି ବଣରେ ବିକ୍ରୀ ହୁଏ ନାହିଁ । ସୁନା କେବଳ କଷଟି ପଥରରେ ପରଖା ହୁଏ, ବାଜେ ପଥରରେ ନୁହେଁ ।

ରାଜା – ବନ୍ଧୁ, ବର୍ଣ୍ଣନା କର, ଶୁଣିବା ।

ବିଦୂ—(ବର୍ଣ୍ଣନା କଲେ)

ଯେଉଁ ସିନ୍ଧୁବାର ବୃକ୍ଷେ ପୁଷ୍ପ ନିକର
* କଲମ ତଣ୍ଡୁଳ-ଅନ୍ନ ପ୍ରାପ୍ତେ ସୁନ୍ଦର
ସେ ପ୍ରିୟ ମୋର ।
ମଥିତ ମହିଷଦଧି ପ୍ରାପ୍ତେ ରୁଚିର
ଦିଶଇ ଯେ ବିକଶିତ ପୁଷ୍ପ ନିକର
ସେ ପ୍ରିୟ ମୋର ।

---

* କଲମ— ଏକ ପ୍ରକାର ଧାନ ।

ବିଟ—ଏ କବିତା କେବଳ ତୁମ ଘରଣୀଙ୍କ ମନ ମୋହିବାକୁ ସମର୍ଥ ।

ବିଦୂ—ଆଗୋ ମଧୁରଭାଷିଣି ! ତମେ ବର୍ଣ୍ଣନା କର ।

ରାଣୀ—ସଖୀ ବିଚକ୍ଷଣା, ଆମ ଆଗରେ ତ ତୁ କବିତା ରଚନାରେ ଖୁବ ଦକ୍ଷତା ଦେଖାଉ । ବର୍ତ୍ତମାନ ଆର୍ଯ୍ୟପୁତ୍ରଙ୍କ ଆଗରେ ନିଜରଚିତ କୌଣସି କବିତା ପାଠ କର । କାରଣ, ତାହା ହିଁ ପ୍ରକୃତ କବିତା, ଯାହା ସଭାରେ ପାଠ କରାଯାଏ । ତାହା ହିଁ ଖାଣ୍ଟି ସୁନା, ଯାହା କଷଟିରେ ଠିକ୍ ରହେ । ସେହି ହେଉଛି ପ୍ରକୃତ ଗୃହିଣୀ, ଯେ ପତିଙ୍କୁ ପ୍ରସନ୍ନ ରଖେ । ସେହି ହେଉଛି ପ୍ରକୃତ ପୁଅ, ଯେ କୁଳ ଉଜ୍ଜ୍ୱଳ କରେ ।

ବିଚ—ମହାରାଣୀଙ୍କର ଯାହା ଆଜ୍ଞା । (ଗାଇଲା)

ମଳୟ ଅନିଳ ଅଟକି ଯାଆନ୍ତେ ଲଙ୍କା ପରବତ କଟୀରେ
ସନ୍ତୋଷେ ଅବଶ ହୋଇଥିଲେ ଯେତେ ଉରଗରମଣୀ, ସଭିରେ
ବିସ୍ତାରି, ସୁବିଶାଳ ଫଣାମଣ୍ଡଳ
କ୍ଷଣକେ ତାହାକୁ ଗ୍ରାସ କରିଦେଲେ କରି ମହାନନ୍ଦେ କବଳ ।

ଘନଘନ ଦୀର୍ଘ ନିଃଶ୍ୱାସ ପକାନ୍ତେ ଖେଦେ ବିରହିଣୀ ବନିତା
ମଳୟ ଅନିଳ ସହସା ପ୍ରବଳ ହୋଇଲା ବିରଜି କ୍ଷୀଣତା
ଏବେ ସେ, ବିହରଇ ଚଉଦିଗରେ
ଶିଶୁ ହୋଇ ମଧ୍ୟ ତରୁଣ ପରି ସେ ବଳ ବିକଶଇ ବେଗରେ ।

ରାଜା—ଚାତୁର୍ଯ୍ୟ-ଉକ୍ତିରେ ବିଚକ୍ଷଣା ପ୍ରକୃତରେ ବିଚକ୍ଷଣା । ଅଧିକ କହିବା ଅନାବଶ୍ୟକ, ସେ କବିମାନଙ୍କ ଉପରେ କବି ।

ରାଣୀ—(ହସି ହସି ) କବିମାନଙ୍କର ଶିରୋମଣି !

ବିଦୂ—(କ୍ରୋଧରେ) ତା' ହେଲେ ମହାରାଣୀ ସ୍ପଷ୍ଟ କହିଦେଉ ନାହାନ୍ତି କ ବିଚକ୍ଷଣା କବିତାରଚନାରେ ଅତି ଉତ୍ତମ, ଆଉ କପିଞ୍ଜଳ ବ୍ରାହ୍ମଣ ଅତି ଅଧମ ।

ବିଚ—ଆର୍ଯ୍ୟ, ରାଗିଯାଆନ୍ତୁ ନାହିଁ । କବିତାରୁ କବିତ୍ୱ ଜଣାପଡ଼େ । ଆପଣଙ୍କର ପେଟ୍ଟୂପଣିଆ ଆପଣଙ୍କର ଗୃହିଣୀଙ୍କୁ ଖୁସି କରିପାରେ । ଯେପରି ଲମ୍ବସ୍ତନୀ ସ୍ତ୍ରୀକୁ ମୁକ୍ତାମାଳ, ଲମ୍ବୋଦର ସ୍ତ୍ରୀକୁ କାଞ୍ଚୁଲି, ଟେରୀକୁ କଟାକ୍ଷ ଚାହାଣି, ଲଣ୍ଡାମୁଣ୍ଡିକୁ ମାଳତୀମାଳ, ଆଉ କାଳୀକୁ କଜ୍ଜଳରେଖା ଶୋଭା ପାଏନାହିଁ, ସେହିପରି ଆପଣଙ୍କର ଅସୁନ୍ଦର ଭାବକୁ ସୁନ୍ଦର ଭାଷା ଶୋଭା ପାଉନାହିଁ ।

ବିଦୂ—ଆଉ ତୋର ଭାବ ସୁନ୍ଦର ହେଲେ ମଧ୍ୟ ଅସୁନ୍ଦର ଭାଷା ଶୋଭା ପାଉ ନାହିଁ, ଯେମିତି କି ସୁନା-ଅଣ୍ଟାସୂତା । ଲୁହାର କଙ୍କଣୀ, ଲୁଗାର ଓଲଟ ପାଖରେ ସୂଚୀ-କାମ, ଗୋରୀ ଦେହରେ ଚନ୍ଦନଟିକା ଶୋଭାପାଏ ନାହିଁ ।

ବିଚ—ଆର୍ଯ୍ୟ, ରାଗିଯାଆନ୍ତୁ ନାହିଁ । ଆପଣଙ୍କ ସହିତ ମୋର ବା କି ତୁଳନା ? କାରଣ, ଆପଣ ନିରକ୍ଷର ହେଲେ ମଧ୍ୟ ରତ୍ନ ତଉଲିବାରେ ପଥର ପରି ନିଯୁକ୍ତ ! ଆଉ ମୁଁ ପଣ୍ଡିତା; ତରାଜୁ ଭଲ ହେଲେ ମଧ୍ୟ ସୁନା ତଉଲିବାରେ ଯାହା ନିଯୁକ୍ତ ନୁହେଁ !

ବିଦୂ—ତୁ ମତେ ଏପରି କହୁଛୁ ! ମୁଁ ତୋ ଦୁଇ ଆଖି ଉପାଡ଼ ପକାଇବି ।

ଚେଟ—ମୁଁ ତୁମ ହାତ କାଟି ପକାଇବି ।

ରାଜା—ମିତ୍ର, ଏପରି କୁହନାହିଁ । ବିଚକ୍ଷଣା ଉତ୍ତମ କବି ।

ବିଦୂ—ତା' ହେଲେ ଆପଣ ସିଧା କହି ଦେଉନାହାନ୍ତି କି ଆପଣଙ୍କ ଦାସୀ ହରିଚନ୍ଦ୍ର, ନନ୍ଦଚନ୍ଦ୍ର, କୋଟିଶ, ହାଲ ପ୍ରଭୃତିଙ୍କ ଅପେକ୍ଷା ମଧ୍ୟ ଭଲ କବି ?

ରାଜା—ହଁ, ତାହା କୁହାଯାଇପାରେ ।

ବିଦୂ—(କ୍ରୋଧରେ ଯିବାକୁ ଉଦ୍ୟତ)

ଚେଟ—ସେଇଠିକି ଯାଅ, ଯେଉଁଠିକି ମୋ ପ୍ରଥମ ଶାଢ଼ୀ ଯାଇଛି (ମରିଯାଅ) ।

ବିଦୂ—ତୁ ସେଇଠିକି ଯା, ଯେଉଁଠିକି ମୋ ମାଆଙ୍କର ପ୍ରଥମ ଦାନ୍ତ ସବୁ ଯାଇଛି (ମରି ଯା) । ଯେଉଁ ରାଜକୁଳରେ ଦାସୀ ଆଉ ବ୍ରାହ୍ମଣକୁ ସମାନ ଦୃଷ୍ଟିରେ ଦେଖାଯାଏ, ମଦ ଆଉ ପଞ୍ଚଗବ୍ୟକୁ ଏକ ପାତ୍ରରେ ରଖାଯାଏ, କାଚ ଆଉ ମାଣିକ୍ୟକୁ ଏକ ଅଳଙ୍କାରରେ ଲଗାଯାଏ, ସେ ରାଜକୁଳର ମଙ୍ଗଳ ହେଉ ।

ଚେଟ—ଏହି ରାଜକୁଳରେ ତୁମ ଗଳାରେ ସେଇଆ ଦିଆଯାଉ, ଯାହାକୁ ଭଗବାନ୍ ଶିବ ନିଜ ମସ୍ତକରେ ଧାରଣ କରନ୍ତି (ତୁମ ଗଣ୍ଠିରେ ଅର୍ଦ୍ଧଚନ୍ଦ୍ର ଦିଆଯାଉ) । ଅଶୋକ ବୃକ୍ଷ ଯାହାଦ୍ୱାରା ଦୋହଦ ଲାଭ କରେ (ପୁଷ୍ପ ଧାରଣ କରେ), ତୁମ ମୁଖକୁ ତାହାଦ୍ୱାରା ଚୂନା କରାଯାଉ (ତୁମ ମୁହଁକୁ ପଦାଘାତରେ ଚୂନା କରାଯାଉ) । *

---

* ନାରୀ ପଦାଘାତରେ ଅଶୋକ ବୃକ୍ଷ ପୁଷ୍ପ ଧାରଣ କରେ ବୋଲି କବି ପ୍ରସିଦ୍ଧ ।

ବଟୁ—ଆଲୋ ଦାସୀପୁତ୍ରି, କଳହଞ୍ଚି, ତୁ ଶହ ଶହ ଧନ ଠକେଇ, ବାଟରେ ଗଡୁ, ତୁ ମତେ ଏପରି କହିବୁ ? ମୁଁ ମହା- ବ୍ରାହ୍ମଣ । ଫାଲ୍‌ଗୁନ ମାସରେ ସଜନାଗଛ ଲୋକମାନଙ୍କଠାରୁ ଯାହା ପାଏ, ଆଉ ବଳଦ ଦୁଷ୍ଟମାନଙ୍କଠାରୁ ଯାହା ପାଏ, ମୋ କଥା ଅନୁସାରେ ତତେ ସେଇଆ ମିଳୁ । *

ଚେଟ—ପାଦବନ୍ଧା ନୂପୁର ପରି ତମେ କାହିଁକି ବକ ବକ ହେଉଛ ? ମୁଁ ପାଦରେ ତମ ମୁହଁ ଚୂନା କରିଦେବି । ଆଉ ଦୁଇ କାନ ଉପାଡ଼ି ଫୋପାଡ଼ି ଦେବି ।

ବଟୁ (ଗୃହପାଳ କବନକା ଉଡ଼ଚୁ ଠିକଏ ଉଚ୍ଚସ୍ୱରରେ)

ଯେଉଁ ରାଜକୁଳରେ ଦାସୀ ବ୍ରାହ୍ମଣ ସହିତ ସ୍ପର୍ଦ୍ଧା କରେ, ତାହାକୁ ଦୂରରୁ ବର୍ଜନ କରିବା ଉଚିତ । ଆଜିଠାରୁ ନିଜ ଘରଣୀ ବସୁନ୍ଧରା ବ୍ରାହ୍ମଣୀର ପାଦସେବା କରି ଘରେ ରହିବି ।

(ସମସ୍ତେ ହସିଲେ)

ରାଣୀ—ଆର୍ଯ୍ୟପୁତ୍ର, କପିଞ୍ଜଳଙ୍କ ବିନା କି ଆନନ୍ଦ ? ଆଖିରେ ଅଂଜନ ବିନା ବେଶ ହେବାରେ ଆଉ ଶୋଭା କଅଣ ?

(ଅନ୍ତରାଳରୁ)

ବଟୁ—ମୁଁ ଯିବି ନାହିଁ, ଯିବି ନାହିଁ । ଅନ୍ୟ କୌଣସି ପ୍ରିୟ ମିତ୍ର ସନ୍ଧାନ କର । କମ୍ବା ସେଇ ଦୁଷ୍ଟା ଦାସୀକୁ ଛାଡ଼ି ଦେଇ

---

* ଫାଲ୍‌ଗୁନ ମାସରେ ସଜନାଗଛର ଡାଳ କାଟିବା କମ୍ବା ଏହାର ଫୁଲ ଖାଇବା ପ୍ରଚଳିତ ଥିଲା ।

ଉପହାସ କରିବା ପାଇଁ ମୋ ସ୍ଥାନରେ ରଖ । ମୁଁ ତୁମ ସମସ୍ତଙ୍କ ମଧ୍ୟରେ ଏକାକୀ ମରିଯାଇଛି । ତୁମେମାନେ ଶହେ ବର୍ଷ ବଞ୍ଚିଥାଅ । (ପ୍ରସ୍ଥାନ)

ସାର—ଅନୁରୋଧ କରନ୍ତୁ ନାହିଁ । ପାଣିରେ ଓଦା ହେଲେ ଶଣ ଦଉଡ଼ିର ଗଣ୍ଠି ଯେପରି ଅଧିକ କଠିନ ହୋଇଯାଏ, ସେହିପରି କପିଞ୍ଜଳ ବ୍ରାହ୍ମଣଙ୍କୁ ଅନୁନୟ କଲେ ସେ ଅଧିକ କଠୋର ହୁଏ । ମହାରାଜ, ଏଣେ ଦର୍ଶନୀୟ ଦୃଶ୍ୟ ଦେଖନ୍ତୁ ।

ରାଜା—(ଚତୁର୍ଦ୍ଦିଗକୁ ଚାହିଁ) ଗୀତ ଗାଇ ଗାଇ ଗୋପାଳବଧୂମାନେ ପାଦରେ ଦୋଳ ଝୁଲାଉଛନ୍ତି । ସେହି ସୁନ୍ଦର ଦୋଳମାନଙ୍କ ଉପରେ ସୂର୍ଯ୍ୟଙ୍କର ଦୃଷ୍ଟି ନିବଦ୍ଧ ହେବାରୁ ତାଙ୍କ ଅଶ୍ୱମାନଙ୍କର ଗତି ବ୍ୟାହତ ହେଉଛି । ଫଳରେ ରଥ ଇତସ୍ତତଃ ହେଉଛି ଏବଂ ଦିବସ ଅତି ଦୀର୍ଘ ହେବାରେ ଲାଗିଛି ।

( ପରଦା ଉଠିଥାନ ରାଣୀ ପ୍ରବେଶ କରି )

ବିଦୂ - ଆସନ ଦିଅନ୍ତୁ, ଆସନ ।

ରାଜା—କିଏ ହେବ ?

ବିଦୂ—ଭୈରବାନନ୍ଦ ଆସୁଛନ୍ତି ।

ରାଣୀ—ଯେ ଅସାଧ୍ୟ ସାଧନ କରନ୍ତି ବୋଲି ଲୋକମୁଖରୁ ଶୁଣାଯାଏ ?

ବିଦୂ—ହଁ ।

( ବିଦୂଷକ ଯାଇ ପୁଣି ଭୈରବାନନ୍ଦଙ୍କ ସହିତ ପ୍ରବେଶ କଲେ)

ଭୈରବ—(ସାମାନ୍ୟ ମଦମତ୍ତ ହେଲାପରି ଅଭିନୟ କରି ) ଆମ୍ଭେ କୌଣସି ମନ୍ତ୍ର, ତନ୍ତ୍ର, ଜ୍ଞାନ ବା ଧ୍ୟାନ ଜାଣୁ ନା । ଗୁରୁଙ୍କ

ଅନୁଗ୍ରହରୁ ଆମ୍ଭେ ମଦ୍ୟପାନ କରୁଁ, ନାରୀ ରମଣ କରୁ !
ଏଥିରେ ଆମ୍ଭେ ମୋକ୍ଷପ୍ରାପ୍ତ ହେଉଁ । ଏହା ଆମ୍ଭର କୁଳଧର୍ମ ।

ରଣ୍ଡୀ, ଚଣ୍ଡୀ, ତନ୍ତ୍ରଶିକ୍ଷିତା ସ୍ତ୍ରୀମାନେ ଆମ୍ଭର ଧର୍ମପତ୍ନୀ । ଆମ୍ଭେ ମଦ ପିଉଁ, ମାଂସ ଖାଉଁ । ଭିକ୍ଷାନ୍ନ ଆମ୍ଭର ଖାଦ୍ୟ ଏବଂ ଚର୍ମଖଣ୍ଡ ଶଯ୍ୟା । ଏହିପରି କୁଳକ୍ରମାଗତ ଧର୍ମ କାହାକୁ ଭଲ ନ ଲାଗେ ?

ଆଉ ମଧ୍ୟ—

ହରି, ବ୍ରହ୍ମା ପ୍ରମୁଖ ଦେବତାମାନେ ଧ୍ୟାନ, ବେଦାଧ୍ୟୟନ, ଯଜ୍ଞକର୍ମଦ୍ୱାରା ମୁକ୍ତି ମିଳେ ବୋଲି କହନ୍ତି । କିନ୍ତୁ ସୁରତକେଳି ଏବଂ ମଦ୍ୟପାନଦ୍ୱାରା ମୁକ୍ତି ମିଳେ ବୋଲି ଏକମାତ୍ର ଉମାପତି କହନ୍ତି ।

ରାଜା—ଏଇ ଆସନ । ବସନ୍ତୁ ଭୈରବାନନ୍ଦ !
ଭୈରବ—(ବସି) କଅଣ ଚାହିଁ ?
ରାଜା—କୌଣସି ଆଶ୍ଚର୍ଯ୍ୟ ବିଷୟ ଦେଖିବାକୁ ଚାହେଁ ।

ଭୈରବ—ମୁଁ ଚନ୍ଦ୍ରକୁ ପୃଥିବୀ ଉପରକୁ ଆଣି ଦେଖାଇପାରେଁ । ଆକାଶମାର୍ଗରେ ସୂର୍ଯ୍ୟଙ୍କ ରଥକୁ ଅଟକାଇ ପାରେଁ । ଯକ୍ଷ, ସୁର, ସିଦ୍ଧଗଣଙ୍କର ସ୍ତ୍ରୀମାନଙ୍କୁ ଆଣିପାରେଁ । ପୃଥିବୀରେ ଏପରି କୌଣସି କାର୍ଯ୍ୟ ନାହିଁ, ଯାହାକୁ ମୁଁ ସାଧନ କରି ନ ପାରେ ।
ତେବେ କୁହ, ମୁଁ କଅଣ କରିବି ?

ରାଜା—ମିତ୍ର, ତୁମେ କେଉଁଠାରେ ଅପୂର୍ବ କନ୍ୟାରତ୍ନ ଦେଖିଛ ?
ବିଦୂ—ଦେଖିଛି ।
ରାଜା—କେଉଁଠାରେ, କୁହ ।

ବଦୂ—ଦାକ୍ଷିଣାତ୍ୟରେ ବୈଦର୍ଭ ନାମକ ଏକ ନଗର ଅଛି । ସେଠାରେ ମୁଁ ଏକ କନ୍ୟାରତ୍ନ ଦେଖିଥିଲି । ତାହାଙ୍କୁ ବର୍ତ୍ତମାନ ଏଠାକୁ ଅଣାଯାଉ ।

ଭୈରବ - ଆଚ୍ଛା, ଅଣାଯାଉଛି ।

ରାଜା—ପୃଥିବୀର ପୂର୍ଣ୍ଣଚନ୍ଦ୍ର ସ୍ୱରୂପା ସେହି କନ୍ୟାରତ୍ନଙ୍କୁ ଆଣନ୍ତୁ । ( ଭୈରବାନନ୍ଦ ଧ୍ୟାନର ଅଭିନୟ କଲେ ।)

(ତା'ପରେ ପରଦା ଆଁଡେଇ ନାୟିକାଙ୍କର ପ୍ରବେଶ । ସମସ୍ତେ ତାଙ୍କୁ ଚାହିଁ ରହିଲେ ।)

ରାଜା—ଅହୋ ! କି ଆଶ୍ଚର୍ଯ୍ୟ !

ଅଞ୍ଜନ ଧୋଇ ଯାଇଥିବାଯୋଗୁ ଏହାର ଆଖି ଲାଲ ଦିଶୁଛି । ମୁଖ ଉପରେ ଓଦା ଓଦା କେଶଗୁଡ଼ିକ ଲାଗିଯାଇଛି । ହାତରେ ନିଜର କେଶଗୁଚ୍ଛକୁ ଧରିଛି । କେଶଗୁଚ୍ଛରୁ ଜଳ ବିନ୍ଦୁମାନ ଖସି-ପଡ଼ୁଛି । ଦେହରେ ଖଣ୍ଡିଏ ମାତ୍ର ବସ୍ତ୍ର । ତେଣୁ ଜଣାପଡ଼ୁଛି, ଏହି ଅପୂର୍ବ ସୁନ୍ଦରୀ ସ୍ନାନକ୍ରୀଡ଼ା କରୁଥିଲାବେଳେ ଯୋଗୀଶ୍ରେଷ୍ଠ ଏହାକୁ ନେଇ ଆସିଛନ୍ତି ।

ଆଉ ମଧ୍ୟ –

ପୃଥୁଳ ପୟୋଧର ଉପରୁ ଖସିପଡ଼ୁଥିବା ବସ୍ତ୍ରକୁ ଇଏ ଏକ ହାତରେ ତା'ଉପରେ ରଖିବାରେ ଲାଗିଛି । ବାରବାର ପଦକ୍ଷେପଯୋଗୁଁ କଟିବସ୍ତ୍ର ଢିଲା ହୋଇଯାଉଛି, ତେଣୁ ଅନ୍ୟ ହାତରେ ତାହାକୁ ସମ୍ଭାଳି ଧରୁଛି । ଏହାର ଏହି ଅବସ୍ଥାର ରୂପ କାହା ହୃଦୟକୁ ପ୍ରଭାବିତ କରୁନାହିଁ ?

ବିଦୂ—ଏ ସୁନ୍ଦରୀ ଦେହରୁ ସମସ୍ତ ଆଭରଣ କାଢ଼ି ଦେଇ ସ୍ନାନ କରୁଥିଲା । ଜଳତରଙ୍ଗରେ ଏହାର ଅଙ୍ଗରାଗ ପ୍ରଭୃତି ମଣ୍ଡନ ଲଭିଯାଇଛି । ତଥାପି ଆର୍ଦ୍ର ବସ୍ତ୍ରରେ ଏହାର ତନୁଲତା ଅଧିକ ଶୋଭାପାଉଛି ଏବଂ ଦର୍ଶକର ଦୃଷ୍ଟିକୁ ସକଳ ସୌନ୍ଦର୍ଯ୍ୟର ଭଣ୍ଡାର ବୋଲି ବୋଧହେଉଛି ।

ନାୟିକା—(ସମସ୍ତଙ୍କୁ ଚାହିଁ ସ୍ୱଗତ) ଏହି ଗମ୍ଭୀର, ମଧୁର ଶୋଭା-ରାଶିରୁ ଜଣାପଡ଼ୁଛି, ଏ ଜଣେ ମହାରାଜ । କେହି ନ କହିଲେ ମଧ୍ୟ ପାର୍ବତୀ ଯେପରି ଅର୍ଦ୍ଧନାରୀଶ୍ୱର ଶିବଙ୍କର ପତ୍ନୀ ବୋଲି ଜଣାପଡ଼ନ୍ତି, ସେହିପରି ଇଏ ଏହାଙ୍କ ରାଣୀବୋଲି ପ୍ରତୀତ ହେଉଛନ୍ତି । ଇଏ ବୋଧହୁଏ ଜଣେ ଶ୍ରେଷ୍ଠ ଯୋଗୀ । ଆଉ ଏମାନେ ସେବକବର୍ଗ । (ଚିନ୍ତାକରି) ଏ ରାଜା ତ ପତ୍ନୀ ସହିତ ଅଛନ୍ତି । ତଥାପି ମତେ କାହିଁକି ବଡ଼ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଦେଖୁଛନ୍ତି !

ରାଜା—(ବିଦୂଷକଙ୍କୁ ଏକ ପାଖକୁ ନେଇଯାଇ ) ଭ୍ରମର ବସିଥିଲେ କେତକୀ ଫୁଲର ଅଗଭାଗ ଯେପରି ଶୋଭାପାଏ, ସେହିପରି ସୁନ୍ଦର ଆକର୍ଣ୍ଣବିସ୍ତୃତ କଟାକ୍ଷରେ ଏ ରମଣୀ ମୋତେ ଯେପରି ଚାହୁଁଛି, ତାହାଦ୍ୱାରା ମୋତେ ବୋଧହେଉଛି, ସତେ ଯେପରି ମୁଁ କର୍ପୂରଦ୍ରବରେ ଧବଳିତ ହେଉଛି, କମ୍ବା ଜ୍ୟୋତ୍ସ୍ନାରେ ସ୍ନାନ କରୁଛି, ଅବା ମୋ ଦେହରେ ବହଳ ମୁକ୍ତାରେଣୁ ବୋଳି ଦିଆହେଉଛି !

ବିଦୂ—ଓ ହୋ ! କି ସୁନ୍ଦରୀ ଏ !

ହଟହଟ ହୁଏ, ଏହାର ତ୍ରିବଳୀଯୁକ୍ତ କଟୀ ଗୋଟିଏ ଶିଶୁର ମୁଠାଭିତରେ ମଧ୍ୟ ରହି ପାରିବ । ନିତମ୍ବକୁ ଦୁଇ ବାହୁରେ ମଧ୍ୟ

ବେଷ୍ଟନ କରି ହୋଇନାହିଁ । ଚକ୍ଷୁର ବିଶାଳତାକୁ ମୃଗଶିଶୁ ସହିତ ତୁଳନା ଦିଆଯାଇପାରିବ । ଏହାକୁ ମୁଁ ଆଗେ ଆଗରେ ଦେଖୁଛି, ତଥାପି ଏହାର ସୌନ୍ଦର୍ଯ୍ୟକୁ ହୃଦୟରେ ଧାରଣ କରିବାକୁ ସମର୍ଥ ହୋଉନାହିଁ ।

ବାସ୍ତବରେ ଯେଉଁ ସ୍ତ୍ରୀମାନେ ରୂପବତୀ ନୁହନ୍ତି, ସେମାନେ ଆଭରଣରେ ଅଙ୍ଗ ସଜାନ୍ତି । ସେମାନଙ୍କର ସୌନ୍ଦର୍ଯ୍ୟ ଆଭରଣ ସାପେକ୍ଷ । ମାତ୍ର ଯେଉଁମାନେ ସ୍ୱଭାବସୁନ୍ଦରୀ, ସେମାନଙ୍କର ଆଭରଣ ଆବଶ୍ୟକ ହୁଏ ନାହିଁ । ତେବେ ଆଭରଣଦ୍ୱାରା ସେମାନଙ୍କର ସୌନ୍ଦର୍ଯ୍ୟ ଅଧିକ ବର୍ଦ୍ଧିତ ହୁଏ ।

ରାଜା—ନୂତନ ଉତ୍କୃଷ୍ଟ ସୁବର୍ଣ୍ଣ ପରି ଏହାର ଲାବଣ୍ୟ । ବିଶାଳ ଚକ୍ଷୁ କର୍ଣ୍ଣପର୍ଯ୍ୟନ୍ତ ବିସ୍ତୃତ । କପୋଳ ଅର୍ଦ୍ଧଚନ୍ଦ୍ର ପରି ସୁନ୍ଦର । କନ୍ଦର୍ପ ଧନୁର୍ହସ୍ତରେ ଏହାକୁ ରକ୍ଷା କରୁଛି; ତେଣୁ ମୁଁ ଗୃହୀନମାନେ ଶୋଷଣ, ମୋହନ ପ୍ରଭୃତି ବାଣରେ ମୋତେ ବଦ୍ଧ କରୁଛି ।

ବିଦୁ—(ହସି ହସି) ରାସ୍ତାରେ ପଡ଼ିଥିବା ରତ୍ନପରି ଏହାର ସୌନ୍ଦର୍ଯ୍ୟ ସମସ୍ତଙ୍କୁ ଆକୃଷ୍ଟ କରୁଛି ।

ରାଜା—(ହାସ୍ୟମୁଖରେ) ପ୍ରିୟ ମିତ୍ର, ଶୁଣ ।

ବିଳାସିନୀମାନଙ୍କର ଅଙ୍ଗ, ହାବ ଭାବ, ବିଭ୍ରମ ପ୍ରଭୃତି ଗୁଣାବଳୀ ଦ୍ୱାରା ଶୋଭା ପାଏ । ଆଉ କେତେକ ସ୍ତ୍ରୀଙ୍କ ଶରୀର ପ୍ରସାଧନ ସାମଗ୍ରୀ ଦ୍ୱାରା ସୁନ୍ଦର ଦେଖାଯାଏ । କିନ୍ତୁ ଯେଉଁମାନଙ୍କ ଦେହରେ ଅନବରତ ସ୍ୱାଭାବିକ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ ଥାଏ, କାମଦେବ ସର୍ବଦା ଧନୁ-ହସ୍ତରେ ସେମାନଙ୍କର ଭୃତ୍ୟରୂପେ ରକ୍ଷାକାରୀ ଭଳି ହୋଇଥାଏ ।

ଆଉ ମଧ୍ୟ—

ଏହାର ନିତମ୍ବ ଏତେ ବିଶାଳ ଯେ ସେଥିରେ କଟିସୂତ୍ର (ଅଣ୍ଟାସୂତା) ଅଣ୍ଟିବ ନାହିଁ । ସ୍ତନ ଏତେ ଉଚ୍ଚ ଯେ ମୁଖ ନାଭି ପର୍ଯ୍ୟନ୍ତ ଆସି ପାରିବ ନାହିଁ ଚକ୍ଷୁ ଏତେ ବିଶାଳ ଯେ କର୍ଣ୍ଣରେ କର୍ଣ୍ଣୋତ୍ପଳ ଆବଶ୍ୟକ ହେବ ନାହିଁ । ଆଉ ମୁଖ ଏତେ ଉଜ୍ଜ୍ୱଳ ଯେ ପୂର୍ଣ୍ଣିମା ରାତିରେ ଯୋଡ଼ାଏ ଚନ୍ଦ୍ର ଉଇଁଲା ପରି ଜଣାପଡ଼େ ।

ରାଣୀ—ଆର୍ଯ୍ୟ କପିଞ୍ଜଳ, ପଗୁର ବୁଝିଲ ଏ କିଏ ?

ବିଦୂ—(ନାୟିକାକୁ) ଆଗୋ ଚନ୍ଦ୍ରାନନେ, ବସ । ତୁମର ପରିଚୟ ପ୍ରଦାନ କର ।

ରାଜା—ତାଙ୍କୁ ଆସନ ଦିଅ ।

ବିଦୂ—ଏଇ, ମୋ ଉତ୍ତରୀୟ ଆସନ ।

(ବିଦୂଷକ ଉତ୍ତରୀୟ ବିଛାଇଦେଲେ ଏବଂ ନାୟିକା ବସିଲେ ।)

ବିଦୂ—ଶ୍ରୀମତି, ଏବେ କହନ୍ତୁ ।

ନାୟିକା—କୁନ୍ତଳ ଦେଶରେ ବିଦର୍ଭ ନାମକ ନଗର ଅଛି । ସେଠାରେ ବଲ୍ଲଭରାଜ ନାମକ ଜଣେ ସର୍ବଜନପ୍ରିୟ ରାଜା ଅଛନ୍ତି ।

ରାଣୀ—(ସ୍ୱଗତ) ସେ ମୋର ମାଉସୀଙ୍କର ସ୍ୱାମୀ ଅଟନ୍ତି ।

ନାୟିକା—ତାଙ୍କ ପତ୍ନୀଙ୍କ ନାମ ଶଶିପ୍ରଭା ।

ରାଣୀ—(ସ୍ୱଗତ) ସେ ମଧ୍ୟ ମୋର ମାଉସୀ ।

ନାୟିକା—ସେମାନେ ମୋର ପିତାମାତା ।

ରାଣୀ—(ସ୍ୱଗତ) ଶଶିପ୍ରଭାଙ୍କ ଗର୍ଭ ବ୍ୟତୀତ ଅନ୍ୟ କେଉଁଠାରୁ ଏପରି ସୌନ୍ଦର୍ଯ୍ୟ ଉତ୍ପନ୍ନ ହୋଇପାରେ ? ବୈଦୁର୍ଯ୍ୟମଣିର ଖଣି ବିନା

ଅନ୍ୟ ନେତ୍ରଙ୍କଠାରୁ ବୈଦୁର୍ଯ୍ୟମଣି ବାହାର ନପାରେ ।
(ପ୍ରକାଶ୍ୟରେ) ତାହାହେଲେ ତୁମେ କର୍ପୂରମଞ୍ଜରୀ ?

(ନାୟିକା ଲଜ୍ଜାରେ ମୁଖ ନତକରି ରହିଲେ ।)

ରାଣୀ—ଆ ଭଉଣୀ, ମୋତେ ଆଲିଙ୍ଗନ କର ।

(କର୍ପୂରମଞ୍ଜରୀଙ୍କୁ ଆଲିଙ୍ଗନ କଲେ)

କର୍ପୂ—ଆର୍ଯ୍ୟା, କର୍ପୂରମଞ୍ଜରୀର ଏଇ ପ୍ରଥମ ପ୍ରଣତି ଗ୍ରହଣ କରନ୍ତୁ ।

ରାଣୀ—ଆର୍ଯ୍ୟ ଭୈରବାନନ୍ଦ, ଆପଣଙ୍କ ଅନୁଗ୍ରହରୁ ମୁଁ ଆଜ ପରମଆନନ୍ଦ ଲାଭ କଲି । କର୍ପୂରମଞ୍ଜରୀ ଏଠାରେ ପନ୍ଦର ଦିନ ରହୁ । ପରେ ଆପଣ ଧ୍ୟାନ-ବିମାନରେ ପଠାଇ ଦେବେ ।

ଭୈର—ଆଜ୍ଞା ହେଉ ।

ବିଦୂ—ଆହେ ମିତ୍ର, ଆମେ ଦୁଇ ଜଣ କେବଳ ଏଠାରେ ବାହାର ଲୋକ । ଏ ସମସ୍ତେ ଗୋଟିଏ ପରିବାର । କାରଣ, ଏ ତ ଦୁଇ ଭଉଣୀ । ଭୈରବାନନ୍ଦ ଏ ଦୁହିଙ୍କର ମିଳନ କରାଇଛନ୍ତି, ଏଣୁ ଏମାନଙ୍କର ପୂଜ୍ୟ । ଆଉ ଏ ମହାତଳ-ସରସ୍ୱତୀ ବିଚକ୍ଷଣା ତ ବିଖ୍ୟାତ ମହାରାଣୀ !

ରାଣୀ—ବିଚକ୍ଷଣା, ଭୈରବାନନ୍ଦଙ୍କର ଇଚ୍ଛାନୁକୂଳ ଅର୍ଚ୍ଚନ କରିବା ପାଇଁ ତୋ ବଡ଼ ଭଉଣୀ ସୁଲକ୍ଷଣାକୁ କହ ।

ବିଚ—ମହାରାଣୀଙ୍କର ଯାହା ଆଜ୍ଞା ।

ବଣୀ—(ରାଜାଙ୍କୁ) ଆର୍ଯ୍ୟପୁତ୍ର, ଅନୁମତ ଦିଅନ୍ତୁ, ଭଉଣୀକୁ ବେଶ କରିବା ପାଇଁ ମୁଁ ଅନ୍ତଃପୁରକୁ ଯିବି ।

ରାଜା—ନିଶ୍ଚୟ ଏବଂ କର୍ପୂରରେ·ଚମ୍ପକଲତାର ମନ୍ଦା·ପୂର୍ଣ୍ଣ କରିବା ତ ଉଚିତ୍ ।

(ନେପଥ୍ୟେ)

୧ମ ଭଟ—ମହାରାଜଙ୍କୁ ସନ୍ଧ୍ୟା ସୁଖକର ହେଉ ।

ସନ୍ଧ୍ୟା ହୁଅନ୍ତେ ଦିବସର ପ୍ରାଣପିଣ୍ଡ ସଦୃଶ ସୂର୍ଯ୍ୟମଣ୍ଡଳ କେଉଁଆଡ଼େ ଚାଲିଗଲା, କିଏ ଜାଣେ ? ସ୍ୱାମୀଙ୍କ ବିଚ୍ଛେଦରେ ପଦ୍ମିନୀ (ପଦ୍ମଲତା) ଦୀର୍ଘକାଳ ପାଇଁ ବିରହିଣୀ ହେଲା । ପଦ୍ମ ବୁଜି ହୋଇ-ଯିବାରୁ ମନେ ହୁଏ, ସତେ ଯେମିତି ଦୁଃଖଜନିତ ମୂର୍ଚ୍ଛାରେ ପଦ୍ମିନୀର ଚକ୍ଷୁ ମୁଦ୍ରି ହୋଇଯାଇଛି !

୨ୟ ଭଟ—ମଣିମୟ କ୍ରୀଡ଼ାଗୃହ ଏବଂ ବେଶଶାଳାଗୁଡ଼ିକୁ ଖୋଲି ଦିଆଗଲାଣି । ଦାସୀମାନେ ବସନ୍ତକାଳ-ଯୋଗ୍ୟ, ସୁଖକର ଶଯ୍ୟାମାନ ଶୀଘ୍ର ଶୀଘ୍ର ବିଛାଇବାରେ ଲାଗିଲେଣି । ସୈରନ୍ଧ୍ରୀ * ସ୍ତ୍ରୀମାନେ ଚପଳ ହସ୍ତାଙ୍ଗୁଳି ଚଳାଇ ମୃଦଙ୍ଗ ବାଦନ କଲେଣି ଏବଂ ମଣ୍ଡପମାନଙ୍କରେ ପ୍ରଥମେ ରୁଷ୍ଟ, ପରେ ତୁଷ୍ଟ ଅଙ୍ଗନା-ମାନଙ୍କର [ପ୍ରିୟଜନ ସହିତ] ମଧୁର ପ୍ରେମାଳାପ ଚାଲିଲାଣି ।

ରାଜା—ତାହାହେଲେ ଆମ୍ଭେ ସନ୍ଧ୍ୟାବନ୍ଦନା କରିବାକୁ ଯିବା ।

[ସମସ୍ତଙ୍କର ପ୍ରସ୍ଥାନ]

---

* ଯେଉଁ ସ୍ତ୍ରୀମାନେ ଅନ୍ୟର ଘରେ ରହି ଫୁଲଗୁନ୍ଥିବା, ବେଶ କରିବା, ବାଦ୍ୟ ବଜାଇବା ପ୍ରଭୃତି କାମ କରନ୍ତି, କିନ୍ତୁ ନିଜର ସ୍ୱାତନ୍ତ୍ର୍ୟ ରଖି ଚଳନ୍ତି, ସେମାନଙ୍କୁ 'ସୈରନ୍ଧ୍ରୀ' ବୋଲାଯାଏ ।

# ଦ୍ୱିତୀୟ ଜବନିକାନ୍ତର

( ରାଜା ଓ ପ୍ରତିହାରୀଙ୍କର ପ୍ରବେଶ )

ପ୍ରତି – ( ଯାଉଥିବା ଅବସ୍ଥାରେ ) ଏଣେ, ଏଣେ ଆସନ୍ତୁ ମହିମା !

ରାଜା—( କିଛି ବାଟ ଯାଇ, କର୍ପୂରମଞ୍ଜରୀଙ୍କୁ ସ୍ମରଣ କରି )
ସେହି ସମୟରେ—

ମୋତେ ଦେଖୁଥିବା ଅବସ୍ଥାରେ ତାର ତନୁଲତା ଏପରି ପ୍ରକାର ଆକାର ଧାରଣ କରିଥିଲା । ସ୍ଥିର ନିତମ୍ବ ସ୍ୱସ୍ଥାନରୁ ତିଳେମାତ୍ର ଚଳିତ ହୋଇ ନ ଥିଲା; ଉଦରରେ ବଳିଶ୍ରେଣୀ ସ୍ୱଳ୍ପ ପରିମାଣରେ ତରଙ୍ଗାୟିତ ହେଉଥିଲା; ମୁହଁ ବୁଲାଇ ଗୁହିଁବାଯୋଗ୍ୟ କଣ୍ଠ ତିର୍ଯ୍ୟକ୍ ( ବଙ୍କା ) ଭାବରେ ରହିଥିଲା ଏବଂ ବେଣୀ ସ୍ତନ ଉପରେ ପଡ଼ିଥିଲା ।

ପ୍ରତି —( ସ୍ୱଗତ ) କଅଣ ଏବେ ମଧ୍ୟ ସେହି ତାଳପତ୍ର ! ସେହି ଅକ୍ଷର ପଂକ୍ତି ! * ତାହାହେଲେ ବସନ୍ତ-ବର୍ଣ୍ଣନା ଦ୍ୱାରା ଏହାଙ୍କର ହୃଦୟ-ଆବେଗ ହ୍ରାସ କରିବି । ( ପ୍ରକାଶ୍ୟରେ ) ଦେଖନ୍ତୁ ମହାରାଜ, ଉଦ୍ୟାନରେ କିପରି ଫୁଲଗୁଡ଼ିକ ଅଳ୍ପ ବିକଶିତ ହୋଇଛନ୍ତି ।

---

* ରାଜାଙ୍କ ସହିତ ଏକ ମୋଟାବୁଦ୍ଧିଆ ଛାତ୍ରର ତୁଳନା କଳ୍ପନା କରିଯାଇଛି । ମୋଟାବୁଦ୍ଧିଆ ଛାତ୍ର ଯେପରି ଗୋଟିଏ ପୋଥିର ଗୋଟିଏ ଲେଖାକୁ ବହୁ ଦିନ ଧରି ପଢ଼ୁଥାଏ, - ରାଜା ସେହିପରି ସବୁବେଳେ କେବଳ କର୍ପୂରମଞ୍ଜରୀଙ୍କୁ ଭାବୁଛନ୍ତି ।

ପ୍ରେମବର୍ଦ୍ଧକ ରତି-ଉଦ୍ଦୀପକ ବସନ୍ତଦିବସ ଆରମ୍ଭରୁ କୋଇଲର କଣ୍ଠସ୍ୱରକୁ ପରିଷ୍କାର କରି, ଭ୍ରମରମାନଙ୍କ ଗୁଞ୍ଜନରେ ଅତ୍ୟନ୍ତ ମଧୁରତା ଭରି, କୋକିଳମାନଙ୍କର ପଞ୍ଚମରାଗ ଏବଂ ତରୁଣୀମାନଙ୍କର ଅନୁରାଗ ଉତ୍ପନ୍ନ କରି ଦୀର୍ଘ ହେବାରେ ଲାଗିଛି ।

ରାଜା—( ତାହା ନ ଶୁଣି ଅନୁରାଗର ସହିତ ) ଲାବଣ୍ୟ ପ୍ରବାହଦ୍ୱାରା ସଞ୍ଚିତ ଲୋକମାନଙ୍କର ତୃପ୍ତି ବିଧାନକାରିଣୀ, ମୃଦୁମଧୁର-ହାସିନୀ, ପରମ ସୌଭାଗ୍ୟଶାଳିନୀ, ଇନ୍ଦୀବରନୟନା ସେହି କର୍ପୂରମଞ୍ଜରୀ ମୋ ଶୃଙ୍ଗାରଭାବ ବର୍ଦ୍ଧନର କାରଣ ହୋଇଛି । ମୁଁ ତାକୁ ଦେଖିବା ମୁହୂର୍ତ୍ତରୁ କନ୍ଦର୍ପ ମୋ ହୃଦୟରେ ତୀକ୍ଷ୍ଣ ଶର ବିଦ୍ଧ କରୁଛି ।

( ଉନ୍ମତ୍ତ ହେଲା ଭଳି ) ଦେଖିବା ଦିନରୁ ସେହି ମୃଗନୟନା । ଚଞ୍ଚଳାକ୍ଷୀ ମୋ ମନ ମଧ୍ୟରେ ବାସକରିଛି । କୌଣସି ଗୁଣରେ ସେ ମୋତେ ନ୍ୟୂନ ବୋଲି ଜଣାପଡ଼ୁନାହିଁ । ମୋ ଶଯ୍ୟାରେ ଶୋଇଲା ଭଳି ବୋଧ ହେଉଛି । ଯେଉଁଆଡ଼େ ଚାହିଁଲେ ସେ ଆଡ଼େ ଦିଶୁଛି । ମୋ କଥା ଶୁଣିଲା ଭଳି, ମୋ ସମ୍ବନ୍ଧରେ କବିତା ରଚନା କଲାଭଳି ପ୍ରତୀତ ହେଉଛି । ଏହିପରି ସେ ତାରୁଣ୍ୟମୟୀ କଦାପି ମୋ ଚିତ୍ତରୁ ବିଚ୍ୟୁତ ହେଉନାହିଁ ।

ମେ ଯେଉଁ ପୁରୁଷମାନଙ୍କୁ ତାର ତୀକ୍ଷ୍ଣ, ଚଞ୍ଚଳ ଦୃଷ୍ଟିର ତିନି ଭାଗରୁ ଏକଭାଗରେ ଚାହିଁଛି, ସେମାନଙ୍କୁ କନ୍ଦର୍ପ, ଚନ୍ଦ୍ର, ବସନ୍ତ ଏବଂ କୋକିଳସ୍ୱର ମାରି ପକାଇବେ । ଆଉ ଯେଉଁମାନଙ୍କ

ଉପରେ ତାର ପୂର୍ଣ୍ଣ ଦୃଷ୍ଟି ପଡ଼ୁଛି, ସେମାନେ ଜାଣି ମୃତ ହେଲେଣି,। ବର୍ତ୍ତମାନ ସେମାନେ ତିଳଜଳ-ଅଞ୍ଜଳି ପାଇବାର ଯୋଗ୍ୟ ।

( ସ୍ମରଣ କଲା ପରି ) ଆଉ ମଧ—

ତାର ଚକ୍ଷୁର ଆଗରେ ଭ୍ରମରଶ୍ରେଣୀ ଏବଂ ମଝିରେ ଆଲୋଡ଼ିତ ଦୁଗ୍ଧର ତରଙ୍ଗମାଳା ଶୋଭା ପାଇଲା ପରି ବୋଧହୁଏ । ଆଉ ସେ ଯେତେବେଳେ ପଛକୁ ଔଦାର୍ଯ୍ୟକ୍ ଭାବରେ ଚାହେଁ, ଯେତେ-ବେଳେ ଜଣାପଡ଼େ, ସତେ ଯେପରି କନ୍ଦର୍ପ ଧନୁ ଆକର୍ଷଣ କରି ଚାଲିଛି ! *

( ଚିନ୍ତା କରି ) ପ୍ରିୟବନ୍ଧୁ କାହିଁକି ଏତେ ବିଳମ୍ବ କଲେଣି !

( ବିଦୂଷକ ଓ ବିଚକ୍ଷଣା କ୍ରମେ କ୍ରମେ ପ୍ରବେଶ କଲେ ।)

ବିଦୂ—ଆଗୋ ବିଚକ୍ଷଣା, ଏ ସବୁ କଅଣ ସତ ?

ବିଚ—ପୂରାପୂରି ସତ ।

ବିଦୂ—ବିଶ୍ୱାସ ହେଉନାହିଁ । କାରଣ, ପରିହାସ କରିବା ତୋର ସ୍ୱଭାବ ।

ବିଚ—ଆର୍ଯ୍ୟ, ଏପରି କୁହ ନାହିଁ । ପରିହାସ କରିବାର ସମୟ ଅଲଗା, ଆଉ କାର୍ଯ୍ୟପାଇଁ ବିଚାରିବାର ସମୟ ଅଲଗା ।

ବିଦୂ—( ଆଗକୁ ଚାହିଁ ) ହେଇ, ପ୍ରିୟବନ୍ଧୁ ଉଦ୍‌ବେଗପୂର୍ଣ୍ଣ ମନ ଯୋଗୁଁ ମାନସରୋବର ଛାଡ଼ି ଆସିଥିବା ହଂସ ଭଳି

---

* ଏଗୁଡ଼ିକ ବର୍ଣ୍ଣନା କବିଙ୍କର ଅତିଶୟୋକ୍ତି

ବଢ଼ୁଛନ୍ତି । ପ୍ରଚୁର ମଦଜଳସ୍ରାବ ଫଳରେ ହାତୀ ଯେପରି କ୍ଷୀଣ ହୋଇଯାଏ, ସେ ସେହିପରି କ୍ଷୀଣ ହୋଇଗଲେଣି । ଆଉ ମଧ୍ୟ ପ୍ରବଳ ଗ୍ରୀଷ୍ମକାଳର ମୃଣାଳ ପରି ମ୍ଳାନ, ଦନ ଘାସ ପରି ନିସ୍ତେଜ ଏବଂ ପ୍ରଭାତକାଳୀନ ପୂର୍ଣ୍ଣଚନ୍ଦ୍ର ପରି ପାଣ୍ଡୁର ତଥା ଦୁର୍ବଳ ଦେଖାଯାଉଛନ୍ତି ।

ଦୁତଦ୍ଵୟ—( ଯାଇ) ମହାରାଜାଙ୍କର ଜୟ ହେଉ ।

ରାଜା—ବନ୍ଧୁ, ବିଚକ୍ଷଣା ସହିତ ପୁଣି କିପରି ମିଳିଗଲ ?

ବିଦୂ—ବିଚକ୍ଷଣା ଆଜି ମୋ ସହିତ ସନ୍ଧି କରିବାକୁ ଆସିଥିଲା । ସନ୍ଧି ପରେ ତା' ସହିତ ଆଳାପ କରୁ କରୁ ଏତେ ସମୟ ବିତିଗଲା ।

ରାଜା—ସନ୍ଧିର ଫଳ କଅଣ ହେଲା ?

ବିଦୂ—ବିଚକ୍ଷଣା ପତ୍ର ନେଇ ଆସିଛି । ତୁମ ପ୍ରିୟସଖୀ ତାକୁ ପଠାଇଛନ୍ତି ।

ରାଜା—( ସୁଗନ୍ଧର ସୂଚନା ପାଇ ) କେତକୀଫୁଲର ଗନ୍ଧ ଭଳି ଜଣାପଡୁଛି !

ବିଚ—କେତକୀ ପାଖୁଡାରେ ଲିଖି ଏଇ ପତ୍ର ଖଣ୍ଡିକ ମୋ ହାତରେ ଅଛି ।

ରାଜ -- ବସନ୍ତ କାଳରେ କେତକୀଫୁଲ କୁଆଡୁ ଆସିଲା ?

ବିଚ—ଭୈରବାନନ୍ଦଙ୍କ ପ୍ରଦତ୍ତ ମନ୍ତ୍ର ପ୍ରଭାବରୁ ମହାରାଣୀଙ୍କ ଗୃହ-ଉଦ୍ୟାନରେ କେତକୀ ଲତାରେ ଗୋଟିଏ ଫୁଲ ଦେଖାଗଲା । ସେହି ଫୁଲର ପାଖୁଡାଗୁଡ଼ିକ ଦ୍ଵାରା ମହାରାଣୀ ଆଜି ହିନ୍ଦୋଳକ-ଉତ୍ସବ ସମାପନାନ୍ତେ ଚତୁର୍ଥୀରେ ପାର୍ବତୀଙ୍କୁ ପୂଜା କଲେ ଏବଂ ଅବଶିଷ୍ଟ ଦୁଇଟି ପାଖୁଡା ସାନ ଭଉଣୀ କର୍ପୂରମଞ୍ଜରୀଙ୍କୁ

ଉପହାର ଦେଲେ । କର୍ପୂରମଞ୍ଜରୀ ମଧ୍ୟ ସେଥିରୁ ଗୋଟିକରେ ଭଗବତୀ ପାର୍ବତୀଙ୍କର ପୂଜା କଲେ ଏବଂ—

ଅନ୍ୟ କେତକୀ ପାଖୁଡ଼ାଟି ଆପଣଙ୍କ ପ୍ରିୟସଖୀ (କର୍ପୂରମଞ୍ଜରୀ) ଆପଣଙ୍କ ନିକଟକୁ ଉପହାର ପଠାଇଛନ୍ତି । ଏହା ଉପରେ କସ୍ତୁରୀ-କାଳିରେ ଦୁଇଟି କବିତା ଲେଖାହୋଇଛି । (ପତ୍ର ଦେଲା)

ରାଜା—[ପତ୍ର ଖୋଲି ପଢ଼ିଲେ]

ହଂସୀକୁ କୁଙ୍କୁମେ ଭୂଷିତ ତା' ପତି
କରୁଥିଲେ ପ୍ରେମଭରେ,
କେ ଜାଣି କାହିଁକି ଚକ୍ରବାକୀ ବୋଲି
ଗ୍ରାବ ତେଜିଗଲେ ତାରେ ।
ମୋ କୃତ ପାପର ପରିଣାମେ ମୁହିଁ
ପାଉଛି ଦାରୁଣ ଦୁଃଖ ,
ଏକ ସ୍ଥାନେ ଥାଇ ଦୃଷ୍ଟିକୋଣେ ଯାହା
ନ ଦେଖିଲି ତବ ମୁଖ ।

(ଦୁଇ ତିନିଥର ପାଠକରି) ଏ ଅକ୍ଷରଗୁଡ଼ିକ କାମପୀଡ଼ା—ପ୍ରଶମର ରସାୟନ ସ୍ୱରୂପ ।

ବିଚ—ଦ୍ୱିତୀୟ ଗୀତଟି ମୁଁ ଲେଖିଛି । ସେଥିରେ ପ୍ରିୟ ସଖୀଙ୍କର ଅବସ୍ଥା ସୂଚିତ ହୋଇଛି । ମଣିମା ପଢ଼ିବା ହୁଅନ୍ତୁ ।

ରାଜା— [ପଢ଼ିଲେ]

ହେ ସୁନ୍ଦର, ତବ ବିରହେ ଉଦ୍‌ବେଗ
ବଢ଼ଇ ଚିତ୍ତେ ତାହାର,
ଦିବସ ରଜନୀ— ସନ୍ତତ ନିଃଶ୍ୱାସ
ଫଳେ ହୁଏ ଦୀର୍ଘତର ।

ମଣି ବଳୟୁର                    ସଙ୍ଗେ ଅଶ୍ରୁ ନୀର-
ଧାରା ହୁଅଇ ଗଳିତ,
ଚନ୍ଦ୍ରଲତା ସହ                    ଜୀବନରୁ ଆଶା
କ୍ଷୀଣତା ଲଭେ ନିରତ ।

ବିଦ—ପୁଣି ଏହି ପତ୍ରରେ ମୋର ବଡ଼ ଭଉଣୀ ସୁଲକ୍ଷଣା ଏକ
କବିତା ଲେଖିଛନ୍ତି । ସେଥିରେ ମଧ୍ୟ ଆପଣଙ୍କ ପ୍ରିୟସଖୀର
ଅବସ୍ଥା ବର୍ଣ୍ଣିତ । ମହାରାଜ ଶୁଣିବା ହୁଅନ୍ତୁ ।

[ ଗାଇଲା ]

ତବ ଲାଗି ତାର                    ନିଃଶ୍ୱାସ ପ୍ରଖର
ଧର୍ମ ହୁଏ ହାର ସମାନ,
ଶରୀରେ ଚନ୍ଦନ                    ବୋଳିଲେ ଫୋଟକା
ଉତପନ୍ନ କରେ ବନ୍ଧନ
ଦେବ ହେ, ଇନ୍ଦ୍ରକରେ ତନୁ ଜ୍ୱଳିତ
'ଯେବେ ଯିବ ମଣ ମନେ ରଖିବ ଗୋ' ହାସେ ତା ଏମନ୍ତ ସୂଚିତ ।

ଦିବସେ ଯେମନ୍ତ                    କଳାକର ରେଖା
ହୁଅଇ ନିସ୍ତେଜ ମଳିନ
ତେମନ୍ତେ ତ ହାର                    ସୁନ୍ଦର ଶରୀର
ହୋଇଲାଣି ଶୀର୍ଣ୍ଣବିହୀନ
ଦେବ ହେ, ନୟନୁ ଲୋତକ ବାହି ତ
ନିରନ୍ତରେ ବହି                    ଉପମା ଲଭଇ
ପଦ୍ମ ପ୍ରଣାଳୀର ସହିତ ।

ରାଜା—(ଦୀର୍ଘଶ୍ୱାସ ପକାଇ) ବେଶ୍, ସୁଲକ୍ଷଣା କବିତା ରଚନାରେ ମଧ୍ୟ ତୋର ଯଥାର୍ଥ ବଡ଼ ଭଉଣୀ ।

ବିଦୂ—ଏ ବିଚକ୍ଷଣା ମହୀତଳ-ସରସ୍ୱତୀ । ଆଉ ଏହା ବଡ଼ ଭଉଣୀ ତ୍ରିଭୁବନ-ସରସ୍ୱତୀ । ତେଣୁ ଏମାନଙ୍କ ସହିତ ମୁଁ ଆଉ ସ୍ପର୍ଦ୍ଧା କରିବ ନାହିଁ । ତଥାପି ପ୍ରିୟ ମିତ୍ର, ତୁମର ଆଗରେ ତୁମ ବିରହାବସ୍ଥା କବିତା ଆକାରରେ କିଛି ବର୍ଣ୍ଣନା କରେଁ ।

ରାଜା—ଆଚ୍ଛା, ଆଚ୍ଛା, ବର୍ଣ୍ଣନା କର, ଶୁଣିବା ।

ବିଦୂ— ସେହି ସୁନୟନା କମଳ ବଦନା
ସୁନ୍ଦରୀ ଉତ୍ତମ
ଦେଖିଲା ଦିନରୁ ଲାଗଇ ଜୋଛନା
ପ୍ରବଳ ଗରମ ।
ଶରୀରେ ଚନ୍ଦନ ବୋଳିଲେ ଲାଗଇ
ବିଷ ପରକାର
କ୍ଷତରେ ଲବଣ ଲଗାଇଲା ପରି
ଦୁଃଖ ଦିଏ ହାର ।
ରାତ୍ରରେ ଶୀତଳ ପବନ ଶରୀରେ
ତାପ ଦିଏ ଭରି
ମୃଣାଳକୁ ଆଣି ଥାପିଲେ ଅଙ୍ଗ ସେ
ପୋଡ଼େ ବାଣ ପରି ।
ଜଳ ସିଞ୍ଚିଲେ ତ ଦେହରେ ଯେମନ୍ତେ
ଲାଗିଯାଏ ନିଆଁ
(ଏମନ୍ତ ବିରହ ବେଦନାରେ ବନ୍ଧୁ
ହେଲେଣି ପ୍ରାଣିଆଁ ।)

ରାଜା—ବନ୍ଧୁ, ତୁମକୁ ବି ଥୋଡ଼ା ନନ୍ଦନ ରସ ମିଳିବ । କର୍ପୂର-
ମଞ୍ଜରୀର ଖବର କଅଣ, କହୁ କୁହ । ତାକୁ ଅନ୍ତଃପୁରକୁ
ନେଇ ମହାରାଣୀ କଅଣ କଲେ ?

ବିଦୂ—ବିଚକ୍ଷଣା ଗୋ, ମହାରାଣୀ କଅଣ କଲେ କୁହ ।

ବିଚ—ମଣିମା, ମହାରାଣୀ ତାଙ୍କୁ ଅଳଙ୍କାର ପିନ୍ଧାଇ ଦେଲେ, ତିଳକ ଲଗାଇ ଦେଲେ, ବିଭୂଷିତ କଲେ, ଆଉ ଖୁସି କରାଇଲେ ।

ରାଜା—କପରି ?

ବିଚ—କୁଙ୍କୁମରାଗ ଲଗାଇ ତାଙ୍କ ଦେହକୁ ଭଲକରି ଘଷିଲେ ।

ରାଜା—ତା'ହେଲେ ତ ସେହି ସୁବର୍ଣ୍ଣ ପ୍ରତିମାକୁ ଆହୁରି ଉଜ୍ଜ୍ୱଳ କରିଦେଲେ !

ବିଚ—ସଖୀମାନଙ୍କ ଦ୍ୱାରା ତାଙ୍କ ପାଦରେ ମର୍କତ ନୂପୁର ପିନ୍ଧାଇ-
ଦେଲେ ।

ରାଜା—ତା' ହେଲେ ତ ଭ୍ରମରଗଣ ଦୁଇଟି ଓଲଟ ପଦ୍ମକୁ ଘେରିଗଲେ !

ବିଚ—ଶୁଆପକ୍ଷୀଆ ନାଳ ପାଟଶାଢ଼ୀ ଏବଂ ଉତ୍ତରୀ ପିନ୍ଧାଇ ଦେଲେ ।

ରାଜା—ତା'ହେଲେ ତ ପବନ ବେଗରେ ପତ୍ର କମ୍ପିଲେ କଦଳୀ ବୃକ୍ଷ ଯେପରି ଦେଖାଯାଏ, ସେ ସେହିପରି ଦିଶୁଥିବ !

ବିଚ—ପଦ୍ମରାଗ ମଣିର ଅଣ୍ଟାସୂତା ଅଣ୍ଟାରେ ପିନ୍ଧାଇ ଦେଲେ ।

ରାଜା—ତା'ହେଲେ ତ ସୁବର୍ଣ୍ଣ ପର୍ବତ ଉପରେ ମୟୂର ନାଚିଲେ

ବର—କରପଦ୍ମରେ କଙ୍କଣ ପିନ୍ଧାଇ ଦେଲେ ।

ରାଜା—ତା'ହେଲେ ତ କନ୍ଦର୍ପର ଓଲଟ ତୂଣୀର ପରି ହାତ ଶୋଭା ପାଉଥିବ !

ବର—ଗଳାରେ ବହୁମୂଲ୍ୟ * ମୁକ୍ତାହାର ପିନ୍ଧାଇ ଦେଲେ ।

ରାଜା—ତେବେ ତ ତାରକାମାନେ ମୁଖଚନ୍ଦ୍ରକୁ ବେଷ୍ଟନ କରି ସେବା କଲେ !

ବର—ଦୁଇ କାନରେ ଦୁଇଟି ରତ୍ନକୁଣ୍ଡଳ ଖଞ୍ଜି ଦେଲେ ।

ରାଜା—ତା'ହେଲେ ତ ମୁଖରୂପୀ କନ୍ଦର୍ପ-ରଥକୁ ଦୁଇଟି ଚକରେ ଚଳାଇଲେ ।

ବର—ଆଖିରେ ସୁନ୍ଦର ଅଞ୍ଜନ ଲଗାଇ ଦେଲେ ।

ରାଜା—ତା'ହେଲେ ତ କନ୍ଦର୍ପର ନୀଳ ପଦ୍ମଶରକୁ ସଜ କଲେ !

ବର—ଲଲାଟ ଉପରେ ଅଳକାଗୁଡ଼ିକ ସଜାଇ ଦେଲେ ।

ରାଜା—ତା'ହେଲେ ତ ତାହା ଚନ୍ଦ୍ରବିମ୍ବ ଉପରେ କୃଷ୍ଣ ମୃଗପରି ଶୋଭା ପାଉଥିବ !

ବର—ସୁନ୍ଦର ନଖୁଆରେ କେଶରେ ଫୁଲ ସଜାଇ ଦେଲେ ।

ରାଜା—ତେବେ ତ ସେଠିକି ମୃଗନୟନାଠାରେ ଚନ୍ଦ୍ର ଓ ରାହୁର ମଲ୍ଲଯୁଦ୍ଧ ଦେଖାଇଲା ଭଳି ହେଲା !

ବର—ଏହିପରି ବିଭିନ୍ନ ପ୍ରସାଧନ-ଦ୍ରବ୍ୟରେ ମହାରାଣୀ କୁମାରୀ କର୍ପୂରମଞ୍ଜରୀଙ୍କୁ ପ୍ରସାଧିତ କଲେ ।

---

* ମୂଳରଚନାର 'ତାମ୍ରାଣିକ ମୌକ୍ତିକ' ଅର୍ଥରେ 'ବହୁମୂଲ୍ୟ ମୁକ୍ତା' ବ୍ୟବହାର କରାଯାଇଛି । ଯେଉଁ ମୁକ୍ତା ଶୁକ୍ତି ଭିତରେ ଗଠିତ ହେବାପାଇଁ ଚଉଅମ ସମୟ ଲାଗେ, ତାହାକୁ ତାମ୍ରାଣିକ ମୁକ୍ତା କୁହାଯାଏ । ଏପରି ମୁକ୍ତା ସାଧାରଣତଃ ବହୁମୂଲ୍ୟ ।

ରାଜା—ତା'ହେଲେ କ୍ରୀଡ଼ା-ଉଦ୍ୟାନଭୂମି ବସନ୍ତ ଶୋଭାରେ ବିଭୂଷିତ ହୋଇଗଲା !

ବିଦୂ—ମହାରାଜ, ଶୁଣନ୍ତୁ । ମୁଁ ଏକ ଯଥାର୍ଥ କଥା କହୁଛି । ଯାହାର ନେତ୍ର ଚଞ୍ଚଳ ଧବଳ, ଅଞ୍ଜନ ତାକୁ କି ଶୋଭାପାଏ । ଯାହାର ସ୍ତନ ବିଶାଳ ଉନ୍ନତ, ହାର ତାକୁ କି ସୁନ୍ଦର ଦିଶେ । ଯାହାର ନିତମ୍ବ ଚକପରି ପୃଥୁଳ, ଅଣ୍ଟାସୂତା ତାହାର କି ଅପୂର୍ବ ସୌନ୍ଦର୍ଯ୍ୟ ବଢ଼ାଏ । ଏପରି ସ୍ତ୍ରୀ ଦେହରେ ଯାହାକିଛି ଅସୁନ୍ଦର ପଦାର୍ଥ ଲଗାଇଦେଲେ ମଧ୍ୟ ତାହା ଭୂଷଣର କାର୍ଯ୍ୟକରେ ।*

ରାଜା—( ପୁଣି କର୍ପୂରମଞ୍ଜରୀଙ୍କୁ ସ୍ମରଣ କରି ) ଆର୍ଦ୍ର ସୂକ୍ଷ୍ମ ସ୍ନାନ-ବସ୍ତ୍ର ତାର ନିବିଳଯୁକ୍ତ ନାଭି ଓ ବାହୁ ମୂଳରେ ଲାଗି ରହିଥିଲା । କୁଚକୁମ୍ଭ ଏବଂ ପୃଥୁଳ ନିତମ୍ବରେ ତାହା ଉପରକୁ ଉଠିଥିଲା । ସେଥିରୁ ସୂଚିତ ହେଉଥିଲା ତା' ଦେହର ଅପୂର୍ବ ସୌନ୍ଦର୍ଯ୍ୟ ଆଉ ଯୌବନ ।

ବିଦୂ—(ବିଷାଧର ଛଳନା କରି ) ଆହେ ! ମୁଁ ତାଙ୍କର ଅଳଙ୍କାର ଭୂଷିତରୂପ ବର୍ଣ୍ଣନା କଲି । କିନ୍ତୁ ଯେତେବେଳେ ସ୍ନାନଯୋଗୁ ତାଙ୍କ ଦେହରେ ମୋଟେ ଅଳଙ୍କାର ନ ଥିଲା, ତୁମେ ଖାଲି

---

* ମୂଳ ଶ୍ଳୋକର ଅନ୍ୟପ୍ରକାର ଅର୍ଥ ମଧ୍ୟ କରାଯାଇପାରେ—ଯାହାରନେତ୍ର ଚଞ୍ଚଳ ତଥା ଧବଳ, ତାର କଜ୍ଜ୍ୱଳରେ କି ଆବଶ୍ୟକତା ? ଯାହାର ସ୍ତନ କଳସ ପରି ବିଶାଳ ତଥା ଉନ୍ନତ, ତାର ହାର କି ଦରକାର ? ଯାହାର ନିତମ୍ବ ଚକଭଳି ପୃଥୁଳ, ତାର ଅଣ୍ଟାସୂତା କି ଆବଶ୍ୟକ ? ଏପରି ସ୍ତ୍ରୀ ପକ୍ଷରେ ଭୂଷଣ ସବୁ ଦୂଷଣ ମାତ୍ର ।

ସେଇ ଅବସ୍ଥାର ରୂପ ସୃଜଣ କରୁଛ ! ତୁମେ କଅଣ ଜାଣିନାହିଁ ?—

ସହଜ ସୁନ୍ଦର ବ୍ୟକ୍ତି ମଧ୍ୟ ଭୂଷଣଦ୍ୱାରା ଅଧିକ ସୁନ୍ଦର ହୁଏନି । ସୁବର୍ଣ୍ଣ ସହିତ ମିଳିତ ହେଲେ ଉତ୍କୃଷ୍ଟ ମଣିର ଶୋଭା ଆହୁରି ବଢ଼ିଯାଏ ।

ରାଜା— ଦୁଃଖର କଥା, ସ୍ତ୍ରୀମାନଙ୍କର ବେଶଭୂଷାଦ୍ୱାରା ମୂର୍ଖଲୋକଙ୍କ ହୃଦୟ ଆକୃଷ୍ଟ ହୋଇଯାଏ । କିନ୍ତୁ ଯେଉଁମାନେ କଳାପ୍ରିୟ ରସଗ୍ରାହୀ, ସେମାନେ କେବଳ ସ୍ୱାଭାବିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୁଅନ୍ତି । ଦ୍ରାକ୍ଷାରସକୁ କଅଣ ଶର୍କରା ମିଶାଇ ମିଠା କରିବାକୁ ପଡ଼େ ?

ବଟୁ— ମଣିମାଙ୍କ କଥା ଠିକ୍ । ଭୂଷଣଦ୍ୱାରା ପୃଥୁଳ ସ୍ତନ, ଆକର୍ଣ୍ଣ-ବିସ୍ତୃତ ଚକ୍ଷୁ, ଚନ୍ଦ୍ରତୁଲ୍ୟ ମୁଖ କିମ୍ବା ଲାବଣ୍ୟପୂର୍ଣ୍ଣ ଅଙ୍ଗର ଶୋଭା କଅଣ ଅଧିକ ବର୍ଦ୍ଧିତ ହୁଏ ? ଭୂଷଣଯୁକ୍ତ ଶରୀର ଅପେକ୍ଷା ଭୂଷଣବିହୀନ ସ୍ୱଭାବସୁନ୍ଦର ଶରୀର ଅଧିକ ଭଲ ଲାଗିବାର କାରଣ—ରୂଢ଼ିର ପ୍ରଭାବ ଅଖଣ୍ଡ । *

---

* ଶବ୍ଦମାନଙ୍କର ବ୍ୟୁତ୍ପତ୍ତିଗତ ଅର୍ଥଠାରୁ ରୂଢ଼ିଗତ ଅର୍ଥ ବେଶି ପ୍ରଭାବଶାଳୀ । ରୂଢ଼ିଗତ ଅର୍ଥ ବ୍ୟୁତ୍ପତ୍ତି ଗତ ଅର୍ଥର ଅପେକ୍ଷା ରଖେ ନାହିଁ । 'ଆଖି ବୁଜି ଦୁଧ ପିଉଛି' ଏହା ଗୋଟିଏ ରୂଢ଼ି ପ୍ରୟୋଗ । ଏଥିରେ ଶବ୍ଦମାନଙ୍କର ମୌଳିକ ଅର୍ଥର (ବ୍ୟୁତ୍ପତ୍ତିଗତ ଅର୍ଥର) କୌଣସି ଉପଯୋଗିତା ନାହିଁ । ତଥାପି ଏହି ପ୍ରୟୋଗ ମନରେ ଯେଉଁ ଭାବ ବା ତାତ୍ପର୍ଯ୍ୟର ଉଦ୍ରେକ କରେ, ତାହା ଅନ୍ୟ କୌଣସି ପ୍ରକାର ସାଧାରଣ ବାକ୍ୟରେ ପ୍ରକାଶ ପାଇପାରିବ ନାହିଁ । ସେହିପରି, ଭୂଷଣବିହୀନ ହେଲେ ମଧ୍ୟ ସ୍ୱଭାବସୁନ୍ଦର ରୂପ ଭୂଷଣଯୁକ୍ତ ସାଧାରଣ ରୂପ ଅପେକ୍ଷା ହୃଦୟକୁ ଅଧିକ ଆକୃଷ୍ଟ କରେ ।

ରାଜା—କପିଞ୍ଜଳ, ତୁମେ କିଛି ଜାଣନାହିଁ । ବରଂ ଏଣା ତୁମକୁ ଶିକ୍ଷା ଦେଲା ।

କୃତ୍ରିମ ବେଶଭୂଷା ଦ୍ୱାରା କିଛି ଲାଭ ନାହିଁ । ତାହା କେବଳ ବେଶ୍ୟାମାନଙ୍କର ପ୍ରତାରଣା । ଯେଉଁ ସ୍ତ୍ରୀମାନଙ୍କର ଶରୀର ସ୍ୱଭାବତଃ ସୁନ୍ଦର ଏବଂ ଜନମନ ଆକର୍ଷକ, ସେହିମାନେ ହିଁ ପ୍ରକୃତରେ ସୁନ୍ଦରୀ । ଯେଉଁ ସମୟରେ ଗୁଣ, ଚରିତ୍ର, ସୌନ୍ଦର୍ଯ୍ୟ ପ୍ରଭୃତି ସମଗ୍ର ଶରୀରରେ ବିକଶିତ ହୁଏ, ସେହି ଯୌବନ ସମୟ ଅତ୍ୟନ୍ତ ଦୁର୍ଲ୍ଲଭ । ସୌନ୍ଦର୍ଯ୍ୟପ୍ରିୟ ବ୍ୟକ୍ତିମାନେ କାହାରି ଯୌବନରେ ବେଶଭୂଷାର ଶୋଭା ଦେଖିବାକୁ ଚାହାନ୍ତି ନାହିଁ ।

ବ୍ରତ—ମହିମା, ମୁଁ ଯେ କେବଳ ମହାରାଣୀଙ୍କ ଆଦେଶରେ କର୍ପୂରମଞ୍ଜରୀଙ୍କର ଅନୁଗତା ହୋଇଛି, ତା ନୁହେଁ । ତାଙ୍କୁ ଦେଖିଲା ପରୁ ସ୍ୱାଭାବିକ ଶ୍ରଦ୍ଧାରେ ମୁଁ ତାଙ୍କର ସଖୀ ମଧ୍ୟ ହୋଇଛି । ତେଣୁ ତାଙ୍କର ସେବକା ଭାବରେ ମୁଁ ନିଜେ କିଛି ନିବେଦନ କରୁଛି ।

ସଖୀମାନେ ତାଙ୍କ ଦେହର ତାପ ଜାଣିବା ପାଇଁ ଛାତି ଉପରେ ହାତ ରଖିଲେ ସଙ୍ଗେ ସଙ୍ଗେ ତାହା ତାତିଯାଉଛି, ତେଣୁ ସେମାନେ ବାରମ୍ବାର ହାତ ଉଠାଇ ଆଣିବାକୁ ବାଧ୍ୟ ହେଉଛନ୍ତି । ଆହୁରି ଗୋଟିଏ କଥା ମଧ୍ୟ ଶୁଣନ୍ତୁ, ଯାହା କି ଆପଣଙ୍କ ମନରେ ସନ୍ତୋଷ ଦେବା ସଙ୍ଗେ ସଙ୍ଗେ ଭୟ ମଧ୍ୟ ସଂଚାର କରିବ । ସେ ହସ୍ତ-ଛନ୍ଦରେ ଚନ୍ଦ୍ର କିରଣକୁ ନିବାରିତ କରି ରାତି ଅତିବାହିତ କରୁଛି ।

ଅବଶିଷ୍ଟ କଥା କପିଞ୍ଜଳ ଜଣାଇବେ । ତାଙ୍କ କହିବା ଅନୁସାରେ ଆପଣ କାର୍ଯ୍ୟ କରିବା ହେବେ ।

(କ୍ରମେ କ୍ରମେ ପ୍ରସ୍ଥାନ)

ରାଜା—ମିତ୍ର, ଅବଶିଷ୍ଟ କଥା କଅଣ ?

ବିଦୂ—ଆଜ ହିନ୍ଦୋଳନ-ଚତୁର୍ଥୀ । ମହାରାଣୀ ଗୌରୀପୂଜା ବହାନା କପୂ'ରମଞ୍ଜରୀଙ୍କୁ ଝୁଲଣରେ ଝୁଲାଇବେ । ଆପଣ ମର୍କତ-କୁଞ୍ଜରେ ରହି ତାଙ୍କୁ ଝୁଲିବାର ଦେଖିବେ । ଏହାହିଁ ଅବଶିଷ୍ଟ କଥା ।

ରାଜା—( ଚିନ୍ତାକରି ) ତା ହେଲେ ଅତି ନିପୁଣା ମହାରାଣୀଙ୍କୁ ମଧ୍ୟ ଆମେ ପ୍ରତାରିତ କଲେ ।

ବିଦୂ—ବୁଡୀ ବିରାଡ଼ିକି ଦୁଧ ବୋଲି ଦହି ପିଆଇ ଦେଲେ !

ରାଜା—ତୁମ ବିନା ଆଉ କିଏ ମୋ କାର୍ଯ୍ୟରେ ଏତେ ତତ୍ପର ହେବ ? ଚନ୍ଦ୍ର ବିନା ଆଉ କିଏ ସମୁଦ୍ରକୁ ଉଲ୍ଲସିତ କରିପାରିବ ? (ଦୁହେଁ କ୍ରମେ କ୍ରମେ କଦଳୀଗୃହରେ ପ୍ରବେଶ କଲେ ।)

ବିଦୂ—ହେଇ, ସ୍ଫଟିକ ମଣିର ଉଚ୍ଚ ଚଉତରା । ପ୍ରିୟବନ୍ଧୁ, ଏହା ଉପରେ ବସ ।

( ରାଜା ବସିଲେ )

ବିଦୂ—( ହାତ ଟେକି ) ଆହେ ! ପୂର୍ଣ୍ଣିମାଚନ୍ଦ୍ର ଦେଖ ।

ରାଜା—( ଗୃହିଁ ) ବାଃ . ଦୋଳା ଉପରେ ମୋ ପ୍ରିୟତମା ବସିଛି । ତମେ ତା ମୁଖକୁ ପୂର୍ଣ୍ଣିମା ଚନ୍ଦ୍ର ବୋଲି କହୁଛ !

( ଚତୁର୍ଦ୍ଦିଗକୁ ଗୃହ୍ଣ )

ତାର ମୁଖ-ଚନ୍ଦ୍ର ନଗରର ସମସ୍ତ ରମଣୀଙ୍କର ମୁଖମଣ୍ଡଳକୁ ନଷ୍ଟପ୍ରଭ କରୁଛି । କାନ୍ତି-ରୂପୀ ଜ୍ୟୋତ୍ସ୍ନାରେ ଆକାଶକୁ ଉଦ୍‌ଭାସିତ କରୁଛି ଏବଂ ଦର୍ଶକମାନଙ୍କର ହୃଦୟାନ୍ୱିତ ଦର୍ପକୁ ଚୂର୍ଣ୍ଣ କରୁଛି । ଏହିପରି ତାର ମୁଖ ଦୋଳାନ୍ଦୋଳାରେ ଅପୂର୍ବ ସୁନ୍ଦର ଦେଖାଯାଉଛି ।

ଧାଡ଼ି ଧାଡ଼ି ଧବଳ ଧ୍ୱଜାବଳୀର ଆଡମ୍ବରରେ ଉଚ୍ଚ ଗୋପୁର (ପୁରଦ୍ୱାର) ଶୋଭାପାଉଛି । ସେଥିରେ ଦୋଳା ଲାଗିଛି । ଦୋଳା ବେଗରେ ଉପରକୁ ଉଠିଯାଉଛି, ତଳକୁ ଖସିଆସୁଛି, ପ୍ରାଚୀର ଲଂଘନ କରୁଛି ଏବଂ ଘଣ୍ଟି ଲାଗିଥିବା ଯୋଗୁଁ ଦେବାଙ୍ଗନାମାନଙ୍କର ଦ୍ରୁତଗାମୀ ବିମାନ ଭଳି ଦେଖାଯାଉଛି । ଟାଣିନେବା ଏବଂ ଛାଡ଼ିଦେବାଦ୍ୱାରା ଉପର ତଳ ହୋଇ ଦୋଳା ଜନମନ ହରଣ କରୁଛି ।

ଆଉ ମଧ୍ୟ—

ମଣିମୟ ନୂପୁର ବାଜୁଛି; ହାର ଝଣ୍ ଝଣ୍ ଶବ୍ଦ କରୁଛି; ସୁନ୍ଦର କଟିସୂତ୍ରରେ (ଅଣ୍ଟାସୂତାରେ) ଲାଗିଥିବା କିଙ୍କିଣୀ ମଧୁର ଶବ୍ଦ କରୁଛି ଏବଂ ଚଳଚଞ୍ଚଳ କଙ୍କଣମାନଙ୍କରୁ ମନୋହର ଧ୍ୱନି ସୃଷ୍ଟି ହେଉଛି । ଏହିପରି ଶଶିମୁଖୀର ଦୋଳଖେଳ କାହାର ମନ ମୁଗ୍ଧ କରୁନାହିଁ ?

ବନ୍ଧୁ—ଆହେ, ତୁମେ ସୂତ୍ରକାର, ମୁଁ ବ୍ୟାଖ୍ୟାକାର ଭାବରେ ବିସ୍ତୃତ ବର୍ଣ୍ଣନା କରିବି ।

ସୁନ୍ଦରୀର ପାଦପଦ୍ମ ଯୋଡ଼କ ଊର୍ଦ୍ଧ୍ୱସ୍ଥିତ ପୃଥୁଳ ସ୍ତନ-ଯୁଗରେ ଭାରାକ୍ରାନ୍ତ ହୋଇ ମଣିମୟ ନୂପୁର ଶବ୍ଦରେ ସତେ ଯେପରି କନ୍ଦର୍ପଙ୍କୁ ଡାକ ପକାଉଛି !

ଝୁଲଣରେ ଝୁଲିବାକୁ ଲଜ୍ଜାଯୁକ୍ତ, ଚକ ପରି ବର୍ତ୍ତୁଳ ନିତମ୍ବ ଅଣ୍ଟାସୂତାର ମଣିକିଙ୍କିଣୀ ଶବ୍ଦଦ୍ୱାରା ସତେ ଯେପରି ଆନନ୍ଦରେ ଚିତ୍କାର କରୁଛି !

ଝୁଲିବାଦ୍ୱାରା କର୍ପୂରମଞ୍ଜରୀଙ୍କର ହାରସ୍ଥିତ ମୁକ୍ତାବଳୀ ଇତସ୍ତତଃ ଚଳିତ ହେଉଛି । ତେଣୁ ହାର କନ୍ଦର୍ପରାଜାଙ୍କର କୀର୍ତ୍ତି ବିସ୍ତାର କଲା ପରି ଜଣାପଡ଼ୁଛି ।

ସମ୍ମୁଖ-ପବନରେ ଉପରବସ୍ତ୍ର ଉଡ଼ିଯିବା ଫଳରେ ଅଙ୍ଗମାନ ଅଳ୍ପ ଅଳ୍ପ ଦେଖାଯାଉଛନ୍ତି । ସତେ ଯେପରି ସେମାନେ କନ୍ଦର୍ପଙ୍କୁ ଡାକ ପାଖରେ ବସାଉଛନ୍ତି ! ଗଣ୍ଡସ୍ଥଳରେ ଚନ୍ଦନ କୁଙ୍କୁମରାଗ ବୋଳାହୋଇଛି । କର୍ଣ୍ଣଭୂଷଣ ଦୁଇଟି ସେଥିରେ ଘଷିହେବା ଫଳରେ ଚିହ୍ନ ବସିଯାଉଛି । ତେଣୁ ଜଣାପଡ଼ୁଛି, କର୍ଣ୍ଣଭୂଷଣ (ତାଟଙ୍କ) ସତେ ଅବା କୌତୁକରେ ଝୁଲଣା ଗଣିବା ପାଇଁ ଗାର ପକାଉଛନ୍ତି ।

ଚକ୍ଷୁଦୁଇଟି କୌତୂହଳରେ ଏତେ ଉତ୍ଫୁଲ୍ଲ ଆଉ ବିଶାଳ ହୋଇଛନ୍ତି ଯେ କନ୍ଦର୍ପ ଯୋଡ଼ାଏ ନୀଳପଦ୍ମର ଶର (କାମୀମାନଙ୍କ ଉପରକୁ ମାରିବା ପାଇଁ) ପ୍ରସ୍ତୁତ କରି ରଖିଥିଲାପରି ଜଣାପଡ଼ୁଛି !

ଝୁଲିବା କ୍ଷଣେମାତ୍ର ବନ୍ଦ ନ ହେଉ, ଏଥିପାଇଁ ବୋଧହୁଏ ବେଣୀ ପିଠି ଉପରେ କନ୍ଦର୍ପର ଚର୍ମପଷ୍ଟି ଭଳି ପଡ଼ୁଛି ।

ଏହିପରି ହୋଲଖେଳର ବିଳାସମୟ ବିସ୍ଥିତ ଚିତ୍ର କୁଶଳୀ କନ୍ଦର୍ପ-ଶିଳ୍ପୀ କାହା ମନରେ ଅଙ୍କିତ କରୁନାହିଁ ?

ରାଜା—ଆରେ ! କର୍ପୂରମଞ୍ଜରୀ ଓହ୍ଲାଇ ପଡ଼ିଲା ଯେ ! ଦୋଳା ଶୂନ୍ୟ ହୋଇଗଲା, ମୋ ମନ ବି ଶୂନ୍ୟ ହୋଇଗଲା, ଆଉ ଦର୍ଶନ-ଉତ୍ସୁକ ଚକ୍ଷୁ ମଧ୍ୟ ଶୂନ୍ୟ ହୋଇଗଲା ।

ବିଦୂ—କଅଣ ବିଜୁଳି ପରି କ୍ଷଣକ ପାଇଁ ଦେଖାଦେଇ ଅଦୃଶ୍ୟ ହୋଇଗଲେ !

ରାଜା—ନା, ନା, ତାହା ନୁହେଁ । ହରିଶ୍ଚନ୍ଦ୍ରନଗରୀ ଭଳି ଦେଖାଦେଇ ବିଲୁପ୍ତ ହୋଇଗଲା । *

(ସ୍ମରଣର ଅଭିନୟ କରି)

ତାର ଓଢ଼ଣୀ ମଞ୍ଜିଷ୍ଠା ରଙ୍ଗରେ ରଞ୍ଜିତ ହୋଇଥିବାରୁ ଲାଲ, ତନୁଲତା ନୂତନ ସୁବର୍ଣ୍ଣ ପରି ଉଜ୍ଜ୍ୱଳ, ଦୃଷ୍ଟି ଦ୍ୱିତୀୟା ଚନ୍ଦ୍ରରେଖା ଠାରୁ ଅଧିକ ଧବଳ, କେଶ କଜ୍ଜ୍ୱଳ ପରି କଳା—ଏହିପରି ତା' ଦେହରେ ବିଭିନ୍ନ ବର୍ଣ୍ଣର ସୌନ୍ଦର୍ଯ୍ୟ ଝଲସି ଉଠୁଛି । ତାର ନେତ୍ର ହରିଣୀର ନେତ୍ର ଚଳଚଞ୍ଚଳ । ତେଣୁ ଯୁବକମାନଙ୍କୁ ଜୟ କରିବା ପାଇଁ ଦର୍ପିଷ୍ଠ କନ୍ଦର୍ପର ଲକ୍ଷ୍ୟ ପୂର୍ଣ୍ଣ ହେଲାଣି ବୋଲି ବୋଧହୁଏ ।

---

* ଦାନବୀର ହରିଶ୍ଚନ୍ଦ୍ରଙ୍କ ନଗରୀ ସର୍ବଦା ଆନନ୍ଦଉତ୍ସବରେ ପୂରି ରହିଥିଲା । କିନ୍ତୁ ବିଶ୍ୱାମିତ୍ର ମୁନିଙ୍କ ହସ୍ତଗତ ହେଲା ପରେ ତାର ସମସ୍ତ ସୌନ୍ଦର୍ଯ୍ୟ, ବୈଭବ ନଷ୍ଟ ହୋଇଗଲା ।

ବିଦୂ—ବନ୍ଧୁ, ଏଇ ମରକତକୁଞ୍ଜରେ ବସି ତାଙ୍କୁ ଅପେକ୍ଷା କର ।
ସନ୍ଧ୍ୟା ତ ହେଲାଣି ।

( ଉଭୟେ ବସିଲେ )

ରାଜା—ଅତି ଶୀତଳ ତୁଷାର ମଧ୍ୟ ମୋତେ ଉଷ୍ଣ ବୋଧହେଉଛି ।

ବିଦୂ—ତା'ହେଲେ ମହାରାଜ, ଆପଣ ରାଜଲକ୍ଷ୍ମୀଙ୍କ * ସହିତ ବସିଥିବା ରହନ୍ତୁ । ମୁଁ ଶୀତଳ ଉପଚାରର ସାମଗ୍ରୀ ପ୍ରସ୍ତୁତ କରେଁ ।

(କିଛିବାଟ ଯାଇ ଆଗକୁ ଚାହିଁ)

କିଅଣ ବିଚକ୍ଷଣା ଏଣିକି ଆସୁଛି !

ରାଜା—ସଂକେତକାଳ ନିକଟ ବୋଲି ଦୂତିକଣ ମନ୍ତ୍ରୀ ମଧ୍ୟ କହିଥିଲେ । (ସ୍ମରଣ କରି, କାମ-ଆବେଗରେ ଆବିଷ୍ଟ ହେବାର ଅଭିନୟ କରି)

କର୍ପୂରମଞ୍ଜରୀର ପାଦ ନବପଲ୍ଲବ ପରି, ଚକ୍ଷୁ ନୀଳ-ପଦ୍ମ ପରି, ମୁଖ ଚନ୍ଦ୍ରପରି, ଶରୀର ଚମ୍ପକପୁଷ୍ପ ପରି । ତଥାପି ସେ ମୋତେ ସନ୍ତାପ ଦେଉଛି ! ବଡ଼ ଆଶ୍ଚର୍ଯ୍ୟର କଥା ।

ବିଦୂ—(ଭଲଭାବେ ନିରୀକ୍ଷଣ କରି) ଆରେ ! ବିଚକ୍ଷଣା କିଅଣ ହାତରେ ଶୀତଳ ଉପଚାର-ସାମଗ୍ରୀ ଧରି ଏଣେ ଆସୁଛି !

---

* ରାଜାଙ୍କ ଦେହରେ ରାଜଲକ୍ଷ୍ମୀ ବାସକରନ୍ତି । ତେଣୁ ରାଜା କୌଣସି ସମୟରେ ଏକାକୀ ନୁହନ୍ତି ।

ବିଚ —(କ୍ରମେ କ୍ରମେ ଉପସ୍ଥିତ ହୋଇ) ଓହୋ ! ପ୍ରିୟ ସଖୀଙ୍କୁ ବଡ଼ ଘୋଷଣ ବିରହ ଜ୍ୱର ।

ବିଦୂ —(ପାଖକୁ ଯାଇ) ଓ ଶ୍ରୀମନ୍ତ, ଏ କଅଣ ?

ବିଚ—ଶୀତଳ ଉପଚାର-ସାମଗ୍ରୀ ।

ବିଦୂ—କାହାପାଇଁ ?

ବିଚ— ପ୍ରିୟସଖୀ ପାଇଁ ।

ବିଦୂ—ତା'ହେଲେ ମତେ ଅଧେ ଦେଇ ଯା ।

ବିଚ—କାହିଁକି ?

ବିଦୂ—ମହାରାଜାଙ୍କ ପାଇଁ ।

ବିଚ—ତାଙ୍କର କଅଣ ହୋଇଛି କି ?

ବିଦୂ—କର୍ପୂରମଞ୍ଜରୀଙ୍କର କଅଣ ହୋଇଛି କି ?

ବିଚ—ସେ ମହାରାଜାଙ୍କୁ ଦେଖିଥିଲେ ବୋଲି କଣ ଜାଣ ନା ?

ବିଦୂ—ମହାରାଜ ତାଙ୍କୁ ଦେଖିଥିଲେ ବୋଲି କଣ ଜାଣୁ ନା ?

(ଉଭୟେ ହସିଲେ)

ବିଚ—ତା' ହେଲେ ମହାରାଜା କେଉଁଠି ?

ବିଦୂ—ତୋ କହିବା ଅନୁସାରେ ମରକତକୁଞ୍ଜରେ ବସିଛନ୍ତି ।

ବିଚ - ତେବେ ମହାରାଜାଙ୍କ ସହିତ ମରକତକୁଞ୍ଜରେ ଦଣ୍ଡେ ଅପେକ୍ଷା କର । ଉଭୟଙ୍କର ପରସ୍ପର ଦର୍ଶନ ହୋଇଗଲେ ଶୀତଳ ଉପଚାର-ସାମଗ୍ରୀ ଆଉ ଦରକାର ହେବନାହିଁ ।

ବିଦୂ—(ବିଚକ୍ଷଣାକୁ ଟିକାଟିପ୍‌କିକରି) ତା'ହେଲେ ଯେଉଁଠାରୁ ଆଉ ଫେରିବୁ ନାହିଁ, ସେଇଠିକି ଯା । (ଠେଲି ଦେଲେ)

(ପୁଣି ବିଚକ୍ଷଣାକୁ) ହଁ କଅଣ ! କଅଣ କହିଲୁ ? ଦୁଆର
ପାଖରେ ଠିଆ ହେବ ?

ବିଚ—ହଁ ମହାରାଣୀଙ୍କ ଆଦେଶରେ କର୍ପୂରମଞ୍ଜରୀ ଆସୁଛନ୍ତି ।

ବିଦୂ—ମହାରାଣୀଙ୍କର କି ଆଦେଶ ?

ବିଚ—(ନିର୍ଦ୍ଦେଶ କରି) ସେଇଠାରେ ମହାରାଣୀ ତିନୋଟି ଗଛଗୁଡ଼ିଏ
ଲଗାଇଛନ୍ତି ।

ବିଦୂ—କି କି ଗଛ ?

ବିଚ—କୁରୁବକ, ତିଳକ, ଅଶୋକ ।

ବିଦୂ—ସେଠି କି କାମ ?

ବିଚ—ମହାରାଣୀ କର୍ପୂରମଞ୍ଜରୀଙ୍କୁ କହିଲେ—

କାମିନୀମାନଙ୍କର ଆଲିଙ୍ଗନରେ କୁରୁବକ, ଦର୍ଶନରେ ତିଳକ
ଏବଂ ପାଦପ୍ରହାରରେ ଅଶୋକ ପୁଷ୍ପ ଧାରଣ କରେ । ତେଣୁ
ସେ ଗୁଡ଼ିକ ଦୋହଦ ଦାନ କର । କର୍ପୂରମଞ୍ଜରୀ ବର୍ତ୍ତମାନ ତାହା
ସଂପାଦନ କରିବେ ।

ବିଦୂ—ତା' ହେଲେ ପ୍ରିୟବନ୍ଧୁଙ୍କୁ ମରକତକୁଞ୍ଜରୁ ନେଇ ତମାଳ-
ଗଛ ଉହାଡରେ ରଖି ଏହା ଦେଖାଇବ (ସେହିପରି କରି
ରାଜାଙ୍କୁ ) ଆହେ, ଉଠ, ନିଜ ହୃଦୟ ସମୁଦ୍ରର ଚନ୍ଦ୍ରରେଖାକୁ
ଦର୍ଶନ କର ।

(ରାଜା ନିରୀକ୍ଷଣ କଲେ)

(ତା ପରେ ବିଭୂଷିତା କର୍ପୂରମଞ୍ଜରୀ ଦୃଷ୍ଟିଗୋଚର ହେଲେ ।)

କର୍ପୂ—ବିଚକ୍ଷଣା କାହିଁ ?

ବଟ—(ନିକଟକୁ ଯାଇ) ସଖୀ, ମହାରାଣୀଙ୍କ ଆଦେଶ ପାଳନ କର ।

ରାଜା—ମିତ୍ର, କି ଆଦେଶ ?

ବିଦୂ—ତମାଳ ଡାଳ ଭିତରେ ଲୁଚି ଦେଖ ।

(ରାଜା ସେହିପରି କଲେ)

ବଟ—ଏଇ କୁରୁବକ ଗଛ ।

( କର୍ପୂରମଞ୍ଜରୀ କୁରୁବକ ଗଛକୁ ଆଲିଙ୍ଗନ କଲେ)

ରାଜା—ବାଃ ! ସୁନ୍ଦର କମ୍ବୁସ୍ତନୀ ନବୀନ କୁରୁବକ ଗଛକୁ ନିବିଡ଼ ଭାବରେ ଆଲିଙ୍ଗନ କଲା । ବୃନ୍ତ ବୃନ୍ତ ସେଥିରେ ଏତେ ଫୁଲ ଫୁଟିଲାଣି ଯେ ଭ୍ରମରମାନେ ସେଠାକୁ ଧାଇଁବାରେ ଲାଗିଲେଣି ।

ବିଦୂ—ଆହେ ! ଦେଖ, ଦେଖ । ଏ ତ କୁହୁକ !

ଶ୍ରେଷ୍ଠ କୁରୁବକ ଗଛଟିଏ ! ସେ ପୁଣି ରମଣୀର ନିବିଡ଼ ଆଲିଙ୍ଗନ ପାଇଁ କନ୍ଦର୍ପର ଶର ପରି ରାଶି ରାଶି ଫୁଲ ଉତ୍ପନ୍ନ କରିଦେଲା !

ରାଜା—ଦୋହଦର ଏହିଭଳି ପ୍ରଭାବ ।

ବଟ—ଏ ତିଳକ ଗଛ ।

(କର୍ପୂରମଞ୍ଜରୀ ତାହାକୁ ସ୍ପର୍ଶ ସମସ୍ତ ବାଙ୍କ ଚାହାଣୀରେ ଚାହିଁଲେ ।)

ରାଜା—ମୃଗନୟନା ତିଳକବୃକ୍ଷ ଉପରେ ନିଜର ତୀକ୍ଷ୍ଣ, ଚଞ୍ଚଳ, କଜ୍ଜଳରଞ୍ଜିତ, କାମୋଦ୍ଦୀପକ ଦୃଷ୍ଟିନିକ୍ଷେପ କରନ୍ତେ ଶାଖାମାନଙ୍କର ଅଗ୍ରଭାଗରେ ମାଳମାଳ ମଞ୍ଜରୀ ଜାତ ହୋଇଗଲା !

ଫଳରେ ତଳକବୃକ୍ଷ ରୋମାଞ୍ଚପୂର୍ଣ୍ଣ ହେଲ ଭଳି ଦେଖାଯାଉଛୁ ।

ବିଚ - ଏ ଅଶୋକଗଛ ।

(କର୍ପୂରମଞ୍ଜରୀ ତାହାଙ୍କୁ ପାଦପ୍ରହାର କଲେ ।)

ରାଜା—ଚନ୍ଦ୍ରମୁଖୀ ନୂପୁର ବାଜୁଥିବା ପାଦରେ ଅଶୋକବୃକ୍ଷକୁ ଯେମିତ ବିଳାସ ପୂର୍ବକ ଆଘାତ କଲେଛୁ, ସଙ୍ଗେ ସଙ୍ଗେ ସମସ୍ତ ଶାଖାରେ ପୁଷ୍ପସ୍ତବକମାନ ଜାତ ହୋଇଗଲା ! ଫଳରେ ଆକାଶ ଉଦ୍‌ଭାସିତ ହୋଇ ଦର୍ଶନୀୟ ରୂପ ଧାରଣ କରିଛି ।

ବିଦୂ—ବନ୍ଧୁ, ମହାରାଣୀ ତ ନିଜେ ଦୋହଦ ଦାନ କଲେ ନାହିଁ ! ତାର କାରଣ ?

ରାଜା—ତମେ ଜାଣିଛ ?

ବିଦୂ—ଜାଣିଛି, ଆପଣ ଯଦି ନ ରାଗିବେ, ତେବେ କହିବି ।

ରାଜା—ଏଥିରେ ରାଗିବାର କଅଣ ଅଛି ? ମୁକ୍ତକଣ୍ଠରେ କୁହ ।

ବିଦୂ -ସଂସାରରେ ଯଦ୍ୟପି ସୌନ୍ଦର୍ଯ୍ୟ କାମିନୀମାନଙ୍କର ଅଙ୍ଗରେ ରହେ, ତଥାପି ଏହା ଯୌବନରେ ଅଧିଷ୍ଠାର୍ତ୍ତୀ ଦେବତା ଭଳି ବାସକରେ ।

ରାଜା—ତୁମର ଅଭିପ୍ରାୟ ଜାଣିଲି । ତଥାପି ମୁଁ କିଛି କହୁଛି— ବାଳାମାନେ କୌତୁହଳରୁ ସାଧାରଣତଃ ଚଞ୍ଚଳଚିତ୍ତ ହୁଅନ୍ତି । କିନ୍ତୁ ଯେଉଁମାନଙ୍କର ସ୍ତନ ଅର୍ଦ୍ଧବିକଶିତ ହୋଇଥାଏ, ସେହିମାନଙ୍କଠାରେ ହିଁ କାମର ରହସ୍ୟ ଲୁଚିଥାଏ ।

ବିଦୂ—ବୃକ୍ଷମାନେ ରୂପରହସ୍ୟରେ ପୁଷ୍ପଧାରଣ କରନ୍ତି, ରତି-ରହସ୍ୟ ଜାଣନ୍ତି ନାହିଁ ।

(ନେପଥ୍ୟେ)

ଭାଟ—ଚକ୍ରବାକମାନଙ୍କର ଏକମାତ୍ର ମିତ୍ର ସୂର୍ଯ୍ୟଦେବ ପଦ୍ମବନକୁ ନିମୀଳିତ କରିବା ସଙ୍ଗେ ସଙ୍ଗେ ଲୋକମାନଙ୍କର ଚକ୍ଷୁକୁ ନିମୀଳିତକରି ଏବଂ ମାନିନୀମାନଙ୍କର ମନରୁ କଠୋରଭାବ ଛଡ଼ାଇବା ସଙ୍ଗେ ସଙ୍ଗେ ନିଜେ କଠୋରଭାବ ତ୍ୟାଗକରି ଅସ୍ତାଚଳକୁ ଯିବାପାଇଁ ଅତ୍ୟନ୍ତ ଉଦ୍ଗ୍ରୀବ ହେଲେଣି । ତାଙ୍କର ବର୍ଣ୍ଣ ପକ୍ୱ ନାରଙ୍ଗ ଭଳି ପିଙ୍ଗଳ ଦିଶିଲାଣି ଏବଂ କିରଣ ମଞ୍ଜିଷ୍ଠା ରଙ୍ଗରେ ରଞ୍ଜିତ ସୂତାପରି ଶୋଭା ପାଉଛନ୍ତି ।

ରାଜା—ମିତ୍ର, ସନ୍ଧ୍ୟା ଉପଗତ ।

ବିଦୂ—ସଙ୍କେତକାଳ ବୋଲି ଭାଟମାନେ ଜଣାଇଲେଣି ।

କର୍ପୂ—ସଖୀ ବିଚକ୍ଷଣା, ମୁଁ ଯିବି । ସନ୍ଧ୍ୟା ହେଲାଣି ।

ବିଚ—ହେଉ ।

(ସମସ୍ତେ କ୍ରମେ କ୍ରମେ ନିଷ୍କ୍ରାନ୍ତ ହେଲେ ।)

—o—

## ତୃତୀୟ ଜବନିକାନ୍ତର

(ରାଜା ଓ ବିଦୂଷକଙ୍କର ପ୍ରବେଶ)

ରାଜା—( କର୍ପୂରମଞ୍ଜରୀଙ୍କୁ ସ୍ମରଣ କରି)

ନବୋଦିତ ଚନ୍ଦ୍ର ଭଳି ତା'ର ସୁନ୍ଦର-ମଧୁର ଲାବଣ୍ୟ ନିକଟରେ ଚମ୍ପକକଳିକା ଅତି ତୁଚ୍ଛ । ହରିଦ୍ରାରେ ବା କି ଆବଶ୍ୟକତା ? ବିଶୁଦ୍ଧ ତପ୍ତ ସୁବର୍ଣ୍ଣକୁ ପଚାରେ କିଏ ? ଆଉ ନୂତନ କେଶର ପୁଷ୍ପରେ ବା କି ପ୍ରୟୋଜନ ?

ମରକତମଣିଖଚିତ ଉଜ୍ଜ୍ୱଳ ହାର ପରି ଏବଂ ଭ୍ରମରମାନଙ୍କ ଦ୍ୱାରା ଅର୍ଦ୍ଧବେଷ୍ଟିତ ମାଳତୀମାଳା ପରି ତାର ସୁନ୍ଦର ଆକର୍ଣ୍ଣବିସ୍ତୃତ ଦୃଷ୍ଟିକୁ ଦେଖିବାପାଇଁ ଦର୍ଶକମାନେ ବାରମ୍ବାର ମୁହଁ ବୁଲାଇ ରହୁଥାନ୍ତି । ସେହି ଦୃଷ୍ଟି ମୋର ହୃଦୟ ଭିତରକୁ ପ୍ରବେଶ କରିଛି ।

ବିଦୂ—ବନ୍ଧୁ, ଧୈର୍ଯ୍ୟଦ୍ୱାରା ପରାସ୍ତ ପୁରୁଷ ଭଳି ତୁମେ କଅଣ କୁର୍ କୁର୍ ହେଉଛ ?

ରାଜା—ମିତ୍ର, ଏକ ସ୍ୱପ୍ନ ଦେଖିଥିଲି । ତାହାକୁ ସ୍ମରଣ କରୁଛି ।

ବିଦୂ—କି ସ୍ୱପ୍ନ, କୁହ ।

ରାଜା—ମୋର ମନେ ପଡ଼ୁଛି—ସେହି ପଦ୍ମନୟନା ସ୍ୱପ୍ନରେ ମୋ କେଳିଶଯ୍ୟା ଉପରକୁ ଆସିଥିଲେ ଏବଂ ମୋତେ ନୀଳକଇଁରେ (ନୀଳକଇଁ ପରି ସୁନ୍ଦର ଆଖିରେ ?) ପ୍ରହାର କରିବାକୁ ଇଚ୍ଛାକରି ହାତେ ମାତ୍ର ଦୂରରେ ଠିଆହେଲେ । ମୁଁ କୌତୂହଳରେ ଶୀଘ୍ର ତାର ପଣତ ଧରି ପକାଇଲି । ମାତ୍ର ଶିଥିଳ ଭାବରେ ଧରିବାରୁ ସେ ତାହା ଟାଣି ନେଇ ସହସା ପଳାଇଗଲେ ଏବଂ ସଙ୍ଗେ ସଙ୍ଗେ ମୋ ନିଦ ଭାଙ୍ଗିଗଲା ।

ବିଦୂ—(ସ୍ୱଗତ) ଆଚ୍ଛା, ହେଉ । (ପ୍ରକାଶ୍ୟରେ) ବନ୍ଧୁ, ମୁଁ ବି ଆଜି ଏକ ସ୍ୱପ୍ନ ଦେଖିଛି ।

ରାଜା—କି ସ୍ୱପ୍ନ ?

ବିଦୂ—ମୋର ମନେ ପଡ଼ୁଛି—ମୁଁ ସପନରେ ଗଙ୍ଗା ସୁଅ ଉପରେ ଶୋଇଥିଲି । ଗଙ୍ଗା ପିନା ମହାଦେବଙ୍କ ମୁଣ୍ଡ ଉପରେ

ଆନନ୍ଦରେ ପାଦ ରଖନ୍ତି, ମୋତେ କିନ୍ତୁ ସେ ଜଳରେ ଗାଧୋଇଦେଲେ ।

ରାଜା—ଆଚ୍ଛା, ତା ପରେ ?

ବନ୍ଦୁ—ତା ପରେ ଯେଉଁ ମେଘ ଶରତ୍ ସମୟରେ ବର୍ଷେ, ସେ ମତେ ମନଖୁସିରେ ପିଇ ଦେଲା ।

ରାଜା—ଆଶ୍ଚର୍ଯ୍ୟ ! ଆଚ୍ଛା, ତା ପରେ ?

ବନ୍ଦୁ—ଭଗବାନ୍ ସୂର୍ଯ୍ୟଦେବ ସ୍ୱାତୀନକ୍ଷତ୍ରକୁ ଯାଆନ୍ତେ ସେ ବିରାଟ ମେଘ ତାମ୍ରପର୍ଣ୍ଣୀ ନଦୀ ଓ ସମୁଦ୍ରର ସଙ୍ଗମସ୍ଥଳକୁ ଗଲା । ମୋର ମନେ ପଡ଼ୁଛି—ମୁଁ ମଧ୍ୟ ସେହି ମେଘର ଗର୍ଭରେ ଥାଇ ଯାଉଥାଏ ।

ରାଜା—ଆଚ୍ଛା, ତା ପରେ ?

ବନ୍ଦୁ—ତା ପରେ ମେଘ ବଡ଼ ବଡ଼ ଟୋପା ହୋଇ ବର୍ଷିବାକୁ ଲାଗିଲା । ମତେ ସମୁଦ୍ରରେ ଥିବା ମୁକ୍ତା ଶାମୁକାମାନେ ଆବରଣ ଖୋଲି ଜଳବିନ୍ଦୁ ସହିତ ପିଇଦେଲେ । ମୁଁ ଦଶ ମାସ ଓଜନର ଗୋଟିଏ ଗୋଟିଏ ମୁକ୍ତା ହୋଇ ସେମାନଙ୍କ ଗର୍ଭରେ ରହିଲି ।

ରାଜା—ତା ପରେ ?

ବନ୍ଦୁ—ମୁଁ ତ ପ୍ରଥମେ ମେଘର ଜଳବିନ୍ଦୁ ଥିଲି । ତା ପରେ ଚଉଷଠି ମୁକ୍ତା-ଶାମୁକା ଗର୍ଭରେ କ୍ରମେ କ୍ରମେ

ବଂଶରୋଚନଠାରୁ * ଉତ୍କୃଷ୍ଟ, ସୁଗୋଲ, ବଡ଼, ସୁନ୍ଦର ତଥା ଉଜ୍ଜ୍ୱଳ ମୁକ୍ତା ଆକାରରେ ପରିଣତ ହେବାରେ ଲାଗିଲି ।

ରାଜା—ତା ପରେ ?

ବନ୍ଦୁ—ତା ପରେ ମୁଁ ସେହି ମୁକ୍ତା-ଶାମୁକାଗୁଡ଼ିକ ଭିତରେ ନିଜକୁ ମୁକ୍ତା ମନେକଲି ।

ରାଜା—ତା ପରେ ?

ବନ୍ଦୁ—ତା ପରେ କିଛି କାଳ ଯାଆନ୍ତେ ଲୋକମାନେ ସମୁଦ୍ରରୁ ସେହି ମୁକ୍ତା-ଶାମୁକାଗୁଡ଼ିକୁ ଉତ୍ତୋଳନ କଲେ ଏବଂ ସେଗୁଡ଼ିକୁ ବିପଣି କଲେ । ମୁଁ ଚଉଷଠୀ ଗୋଟି ମୁକ୍ତା ହୋଇଥିଲି । ଜଣେ ଶେଠ ଲକ୍ଷେ ସୁବର୍ଣ୍ଣ ଦେଇ ମତେ କିଣିନେଲା ।

ରାଜା—ଆରେ ବାଃ ! ବଡ଼ ବିଚିତ୍ର ସ୍ୱପ୍ନ ! ଆଚ୍ଛା, ତା ପରେ ?

ବନ୍ଦୁ—ତାପରେ ସେ ଶେଠ ମୋତେ ନେଇ ମୁକ୍ତା-ଛିଦ୍ରକାରୀମାନଙ୍କ ଦ୍ୱାରା ମୋ ଦେହରେ ଛିଦ୍ର କରାଇଲା । ମତେ ଟିକିଏ ଟିକିଏ କଷ୍ଟ ହେଲା ।

ରାଜା—ତା ପରେ ?

ବନ୍ଦୁ—ତା ପରେ ଗୋଟି ଦଶ ମଷା ଓଜନର ସେହି ମୁକ୍ତାଗୁଡ଼ିକ ଦ୍ୱାରା ଏକ ହାର ଗୁନ୍ଥା ହେଲା । ସେ ହାରର ମୂଲ୍ୟ ହେଲା କୋଟିଏ ସୁବର୍ଣ୍ଣ ।

ରାଜା—ତା ପରେ ?

ବନ୍ଦୁ—ତା ପରେ ତାହାକୁ ସୁନ୍ଦର ପେଡ଼ିରେ ରଖି ସାଗର ଦତ୍ତ ନାମକ ବଣିକ ପାଞ୍ଚାଳ ଦେଶର ରାଜା ଶ୍ରୀ ବଜ୍ରାୟୁଧଙ୍କ ନଗର

---

* ବଂଶରୋଚନ—ଏକପ୍ରକାର ମଣି ।

କାନ୍ୟକୁବ୍ଜକୁ ଗଲା । ସେଠାରେ ସେ ତାହାକୁ କୋଟିଏ ସୁବର୍ଣ୍ଣ ମୂଲ୍ୟରେ ବିକଲା ।

ରାଜା—ତା ପରେ ?

ବିଦୂ—ତା ପରେ ପାଞ୍ଚାଳରାଜ ବଜ୍ରାୟୁଧ ନିଜ ରାଣୀଙ୍କ ପୃଥୁଳ ସ୍ତନ ଦୁଇଟିର ଉଚ୍ଚତା ଏବଂ ହାରର ସୌନ୍ଦର୍ଯ୍ୟକୁ ଦେଖି ହାରକୁ ରାଣୀଙ୍କ ଗଳାରେ ପିନ୍ଧାଇଦେଲେ । ବିଦଗ୍ଧ ଲୋକମାନେ ଯୋଗ୍ୟ ସହିତ ଯୋଗ୍ୟର ମିଳନ ଦେଖିଲେ ଆନନ୍ଦିତ ହୁଅନ୍ତି ।

ତା ପରେ—

ଯେବେ ଅର୍ଦ୍ଧରାତ୍ରିରେ ଆକାଶ ବିମଳ ଜ୍ୟୋତ୍ସ୍ନାରେ ପରିପୂର୍ଣ୍ଣ ହୋଇଥାଏ । ଏହି ସମୟରେ କନ୍ଦର୍ପ ପ୍ରହାର କରିବାରୁ ରାଜା ଓ ରାଣୀ ତା' ଉପରେ ପରସ୍ପର ମିଳିତ ହେଲେ ଏବଂ ରତିକ୍ରୀଡ଼ା ଆରମ୍ଭ କଲେ । ନିବିଡ଼ ଆଲିଙ୍ଗନରେ କଳସ ପରି ଉଚ୍ଚ, ପୃଥୁଳ ସ୍ତନଦୁଇଟି ଖୁବ୍ ଜୋର୍‌ରେ ଚିପିଦେବାରୁ ମତେ କଷ୍ଟ ହେଲା ଏବଂ ସଙ୍ଗେ ସଙ୍ଗେ ମୋର ନିଦ ଭାଙ୍ଗି ଗଲା ।

ରାଜ—(ହସି ହସି ଚିନ୍ତାପୂର୍ବକ) ସ୍ୱପ୍ନ ମିଥ୍ୟା । ତଥାପି ମୁଁ ତାହା ସ୍ମରଣ କରିବାରେ ନିବିଷ୍ଟ ଥିଲି । କିନ୍ତୁ ଆଉ ଏକ ସ୍ୱପ୍ନ କଥା କହି ମତେ ସେଥିରୁ ନିବୃତ୍ତ କରିବା ତୁମର ଅଭିପ୍ରାୟ ।

ବିଦୂ—ରାଜ୍ୟଚ୍ୟୁତ ରାଜା, କ୍ଷୁଧାକ୍ଲାନ୍ତ ବ୍ରାହ୍ମଣ, ପୁରୁଷ-ଆସକ୍ତ ବାଳବିଧବା, ଆଉ ବିରହୀ ପୁରୁଷ, ଏମାନେ କଳ୍ପନା-ମୋଦକରେ ଆପଣାକୁ ଖୁସି ରଖନ୍ତି । ଆଚ୍ଛା ମିତ୍ର, ମୁଁ ପଚାରେଁ, ଏହା କାହାର ପ୍ରଭାବ ?

ରାଜା—ପ୍ରେମର ।

ବିଦୂ—ଆହେ, ମହାରାଣୀଙ୍କ ସହିତ ଗାଢ଼ ପ୍ରେମ ଥିଲେ ମଧ୍ୟ ତୁମେ କର୍ପୂରମଞ୍ଜରୀଙ୍କୁ ଏମିତ ଗୃହଁ ଯେ ଜଣାପଡ଼େ, ସତେ ଯେପରି ସାରା ଦେହରେ ଆଖି ଲଗାଇ ତାଙ୍କୁ ପିଇଯିବ ! କଅଣ କର୍ପୂରମଞ୍ଜରୀଙ୍କ ଠାରୁ ମହାରାଣୀ ଗୁଣରେ ନ୍ୟୁନ ?

ରାଜା—ସେପରି କିଛି ନାହିଁ ।

ବେଳେ ବେଳେ ଦୁଇଜଣଙ୍କ ମଧ୍ୟରେ ପ୍ରେମ ଆପେ ଆପେ ହୋଇଯାଏ । ସେଥିରେ ସୌନ୍ଦର୍ଯ୍ୟ କାରଣ ନୁହେଁ । ତଥାପି ସେଥିରେ ସୌନ୍ଦର୍ଯ୍ୟକୁ ଯେ କାରଣ ବୋଲି ଧରାଯାଏ, ତାହା କେବଳ ଦୁଷ୍ଟ ଲୋକଙ୍କର ମୁଖ ବନ୍ଦ କରିବା ପାଇଁ । ✻

ବିଦୂ—ଆହେ, ଏ ଯେଉଁ 'ପ୍ରେମ' 'ପ୍ରେମ' ବୋଲି କହୁଛ, ତାହା କଅଣ ?

ରାଜା—ପରସ୍ପର ଆକୃଷ୍ଟ ସ୍ତ୍ରୀ ପୁରୁଷଙ୍କର କାମଭାବକୁ ବିଦଗ୍ଧ-ମାନେ 'ପ୍ରେମ' ବୋଲି କହନ୍ତି ।

ବିଦୂ—ତାହାର ସ୍ୱରୂପ କଅଣ ?

ରାଜା—ସେଥିରେ ପରସ୍ପରର ଆତ୍ମଗତଭାବ ସରଳତା ପ୍ରାପ୍ତ ହୁଏ । ବିଧି-ନିଷେଧ, ହାନି-ଲାଭ ପ୍ରଭୃତି ବିଚାରସଂଶୟ ଦୂର ହୋଇଯାଏ ; ଉଭୟଙ୍କର ଆନନ୍ଦରସର ପ୍ରବାହ ବଢ଼ିବାରେ ଲାଗେ; ଆଉ ମଧ୍ୟ ପ୍ରୀତି-କାମନାଦ୍ୱାରା ସେହି କାମଭାବ ଅଧିକ ପରିପୁଷ୍ଟ ହୁଏ ।

---

✻ କେହି କାହା ସହିତ ପ୍ରେମ କଲେ ତାହା ସଙ୍ଗତ ବା ଅନୁରୂପ ହେଲନାହିଁ ବୋଲି ଦୁଷ୍ଟ ଲୋକମାନେ କହିପାରନ୍ତି । ମାତ୍ର ପ୍ରେମିକପ୍ରେମିକାଙ୍କର ଯଦି ସୌନ୍ଦର୍ଯ୍ୟ ଆଦି ଗୁଣ ଥାଏ, ତେବେ ଏପରି କହିବାର ଅବକାଶ ନ ଥାଏ ।

ବନ୍ଧୁ—ଆଚ୍ଛା, ତାହା କିପରି ପ୍ରକାଶ ପାଏ ?
ରାଜା—ଯେଉଁ ସ୍ତ୍ରୀପୁରୁଷ ନିଜ ନିଜର ସ୍ୱାଭାବିକ-ବିଶାଳ ତଥା ଚଞ୍ଚଳ ଚକ୍ଷୁର କଟାକ୍ଷରେ ପରସ୍ପରକୁ ଚାହିଁବାପାଇଁ ଲାଳାୟିତ ହୁଅନ୍ତି, କନ୍ଦର୍ପ ବୃଦ୍ଧିପ୍ରାପ୍ତ ହୋଇ ଯେଉଁମାନଙ୍କୁ ଅତିଶୟ ଆନନ୍ଦ ଦାନ କରେ, ସେମାନଙ୍କର ହୃଦ୍‌ଗତ ଭାବ ଦୃଶ୍ୟୀଭୂତ ହେଲାଭଳି ପ୍ରକାଶ ପାଏ ।

ଆଉ ମଧ୍ୟ—

କନ୍ଦର୍ପ ହୃଦୟ ଭିତରେ ପଶି ଯେଉଁ ହାବ, ଭାବ, ହାସ ପ୍ରଭୃତି ସୃଷ୍ଟି କରେ, ତାହା କନ୍ଦର୍ପର ମଣ୍ଡନ ସ୍ୱରୂପ ଏବଂ ତାହା ହିଁ ପ୍ରେମ ବୋଲି କଥିତ ହୁଏ । ସଂସାରରେ ଲୋକମାନଙ୍କର ଅତି ଗୁପ୍ତ କଥା ମଧ୍ୟ ଏହି ଦ୍ୱାରା ପ୍ରକଟିତ ହୁଏ । ତେଣୁ ଏହା କନ୍ଦର୍ପର ଦୁର୍ବୋଧ କୁହୁକ ।

ବନ୍ଧୁ—ଯଦି ହୃଦୟର ପ୍ରେମ ଅନୁରାଗ ଉତ୍ପନ୍ନ କରେ, ତେବେ ବେଶଭୂଷା ତ ଅନାବଶ୍ୟକ ?
ରାଜା—ବନ୍ଧୁ, ତାହା ସତ୍ୟ ।

କଟିସୂତ୍ର, କଙ୍କଣ, ନୂପୁର, ମସ୍ତକଭୂଷଣ ପ୍ରଭୃତି ନିରର୍ଥକ । ସୌନ୍ଦର୍ଯ୍ୟ ମଧ୍ୟ (ବେଳେ ବେଳେ) ବ୍ୟର୍ଥ । ପ୍ରସାଧନ ଆଡ଼ମ୍ବରରେ କିଛି ଲାଭନାହିଁ । ସଂସାରରେ ଆଉ ଅନ୍ୟ କିଛି ଅଛି, ଯାହାଦ୍ୱାରାହିଁ ସ୍ତ୍ରୀମାନେ ଜନମନ ଆକର୍ଷଣ କରନ୍ତି ।

ଆଉ ମଧ୍ୟ—

ଗୀତ, ନୃତ୍ୟରେ କିଛି ଲାଭ ନାହିଁ । ମଦ ମଧ୍ୟ ନିରର୍ଥକ । ଅଗୁରୁ-ଧୂପ, କୁଙ୍କୁମ ମଧ୍ୟ ଅନାବଶ୍ୟକ । ସଂସାରରେ ଭଲପାଇବା ଢଙ୍ଗରେ ମନୁଷ୍ୟର ଅନ୍ତରୁଚିର ସମକକ୍ଷ ଆଉ କିଛି ନାହିଁ ।

ଆହୁରି ମଧ୍ୟ—

ଜଣେ ଚକ୍ରବର୍ତ୍ତୀ ରାଜାର ପତ୍ନୀ, ଆଉ ଜଣେ ସାଧାରଣ ମନୁଷ୍ୟର ପତ୍ନୀ, ଉଭୟଙ୍କ ପ୍ରେମରେ ତିଳେ ମାତ୍ର ପାର୍ଥକ୍ୟ ନାହିଁ । ଯଦି ସୌନ୍ଦର୍ଯ୍ୟ ଦ୍ୱାରା କୌଣସି ଭାବ ସୃଷ୍ଟି ହେଉଥିବ, ତାହାହେଲେ ମାଣିକ୍ୟ-ଭୂଷଣ, ସୁନ୍ଦର ବସ୍ତ୍ର, କୁଙ୍କୁମ ପ୍ରଭୃତି ଦ୍ୱାରା ହେଉଥିବ । ( ମାତ୍ର ଏପରି ପ୍ରେମ ନିକୃଷ୍ଟ । )

ଚଞ୍ଚଳ ନେତ୍ରଦ୍ୱାରା କି ଲାଭ ? ଚନ୍ଦ୍ରତୁଲ୍ୟ ମୁଖରେ କି ପ୍ରୟୋଜନ ? ଉନ୍ନତ ସ୍ତନରେ ବା କି ଆବଶ୍ୟକତା ? ଏ ସଂସାରରେ ଆଉ ଅନ୍ୟ କିଛି କାରଣ ଅଛି, ଯାହାଦ୍ୱାରା ସ୍ତ୍ରୀମାନେ ପୁରୁଷକୁ ଅତ୍ୟନ୍ତ ଆକୃଷ୍ଟ କରନ୍ତି ।

ବିଦୂ—ସେହି ଅନ୍ୟ କିଛି କଅଣ, ମତେ କୁହ, ଯାହାଦ୍ୱାରା କି କୁମାର ଅବସ୍ଥାରେ ଯେ ସୁନ୍ଦର ଦିଶୁ ନ ଥାଏ, ସେ ଯୌବନରେ ସୁନ୍ଦର ଦିଶେ ।

ରାଜା ଏ ସଂସାରରେ ବିଧାତା ଦୁଇ ଜଣ । ଜଣେ ଦେହ ନିର୍ମାଣ କରିବାରେ ଏବଂ ଆଉ ଜଣେ ଯୌବନ ଦେବାରେ ଦକ୍ଷ । ପ୍ରଥମ ଜଣକ କୁମାରୀମାନଙ୍କର ଶରୀର ଗଠନ କରେ ଏବଂ ଦ୍ୱିତୀୟ ଜଣକ ( କନ୍ଦର୍ପ ) ଶରୀରରେ ଯୌବନର ବିକାଶ କରେ ।

ଏହି ଯୌବନ ଯୋଗୁ କାମିନୀମାନଙ୍କର କଙ୍କଣ, କର୍ଣ୍ଣୀପୁଷ୍ପ, ନୂପୁର ପ୍ରଭୃତିର ଶୋଭା ସାର୍ଥକ ହୁଏ । ମରକତମଣି ଏବଂ ସୁବର୍ଣ୍ଣର ହାର ହୃଦୟ ହରଣ କରେ । ଯୌବନ ହିଁ କନ୍ଦର୍ପର ପ୍ରବଳ ଧନୁ ବାଣ ଏବଂ ସୁନ୍ଦର ସୁନ୍ଦର ପ୍ରଭାବଶାଳୀ ।

ଯୌବନରେ ସ୍ତ୍ରୀମାନଙ୍କର ଶରୀର ଲାବଣ୍ୟରେ ପରିପୂର୍ଣ୍ଣ ହୁଏ; ଚକ୍ଷୁ କର୍ଣ୍ଣପର୍ଯ୍ୟନ୍ତ ବିସ୍ତୃତ ହୋଇ ଅତ୍ୟନ୍ତ ସୁନ୍ଦର ଦିଶେ; ବକ୍ଷରେ ସ୍ତନ ପୃଥୁଳ ଆକାର ଧାରଣ କରେ , କଟୀ ତ୍ରିବଳଯୁକ୍ତ ତଥା ଅତ୍ୟନ୍ତ କ୍ଷୀଣ ହୁଏ ଏବଂ ନିତମ୍ବ ଚକ୍ର ଭଳି ବିଶାଳ ହୁଏ । ଏହି ପାଞ୍ଚଟି ଅଙ୍ଗ ଦ୍ୱାରା ସ୍ତ୍ରୀମାନେ କନ୍ଦର୍ପର ବିଶ୍ୱ ବିଜୟରେ ପତାକାର କାମକରନ୍ତି । *

( ନେପଥ୍ୟ )

ସଖୀ କୁରଙ୍ଗିକା, ଏହି ଶୀତଳ ଉପଗୃହରେ ମୁଁ ପଦ୍ମାବତୀ ଅତ୍ୟନ୍ତ କଷ୍ଟପାଉଛି ।

ମୃଣାଳ ବିଷ ପରି ଲାଗୁଛି, ହାର ସାପ ପରି ବୋଧହେଉଛି, ବିଞ୍ଚଣାପବନ ନିଆଁ ବର୍ଷିଲା ପରି ଜଣାପଡ଼ୁଛି, ଯନ୍ତ୍ରଧାରାର ଜଳ ତାପ ଦେଉଛି, ପୁଣି ଚନ୍ଦନ ବୋଳିଲେ ମଧ୍ୟ ଦେହର ଉତ୍ତାପ ଟିକିଏ ହେଲେ କମୁନାହିଁ ।

ବିଦୂ—ପ୍ରିୟ ବନ୍ଧୁ ଶୁଣିଲ ? କାନ ଅମୃତ ରସରେ ପୂରିଯାଇଥିବ । ତା ହେଲେ ପ୍ରବଳ ଉତ୍ତାପରେ ମୃଣାଳକାଟି ଶୁଖିଯାଉଛି, ତୁମେ ଏବେ ମଧ୍ୟ ତାକୁ ଉପେକ୍ଷା କରୁଛ ? ଅତି ତପ୍ତ, ଅସହ୍ୟ ଜଳରେ କେଳିକୁଙ୍କୁମପତ୍ରାଳୀ ସିକ୍ତ ହେଉଛନ୍ତି, ତୁମେ ତା' ପ୍ରତି ଟିକିଏ ଦୃଷ୍ଟି ଦେଉନାହଁ । ଉତ୍କୃଷ୍ଟ ମୁକ୍ତାହାର ଭାଙ୍ଗିଭୁଟି ଯାଉଛି, ତୁମେ ତାହାର ଯତ୍ନ ନେଉନାହଁ ? କସ୍ତୁରୀ ମୃଗଦ୍ୱାରା ଗ୍ରନ୍ଥିପତ୍ର-କଅଁଳ ନଷ୍ଟ ହେଉଛି ; ତୁମେ କେତେଦିନ ପର୍ଯ୍ୟନ୍ତ

---

* ଏହି ପାଞ୍ଚଟି ଅଙ୍ଗବଳରେ କନ୍ଦର୍ପ ବିଶ୍ୱ ବିଜୟ କରେ । ତା'ର ଅନ୍ୟ କିଛି ଆବଶ୍ୟକ ହୁଏ ନାହିଁ ।

ତାହା ଦେଖୁଥିବ ? ତୁମ ସ୍ୱପ୍ନ ସଫଳ ହୋଇଛି ! ଆସ, ଭିତରକୁ ଯିବା କନ୍ଦର୍ପଙ୍କ ପତାକା ଉଡ଼ୁ, କୋଇଲି କଣ୍ଠରେ ପଞ୍ଚମ ତାନ ଆରମ୍ଭ ହେଉ, ଅଶ୍ରୁଧାରା କ୍ଷୀଣ ହେଉ, ଦୀର୍ଘନିଶ୍ୱାସ ହ୍ରାସପାଉ, ଲାବଣ୍ୟ ପୁଣି ନୂତନତା ପ୍ରାପ୍ତ ହେଉ । ଆସ, ଖିଡକି ବାଟେ ଭିତରକୁ ଯିବା ।

(ଦୁହେଁ ଭିତରକୁ ଗଲେ ।)

(କର୍ପୂରମଞ୍ଜରୀ ଓ କୁରଙ୍ଗିକା ରଙ୍ଗମଞ୍ଚ ଉପରେ ଦୃଷ୍ଟି ଗୋଚର ହେଲେ ।)

କର୍ପୂ—(ଅତି ଚମତ୍କୃତ ହେଲାପରି ସ୍ୱଗତ) ଏ କଅଣ ! ହଠାତ୍ ଆକାଶରୁ ପୂର୍ଣ୍ଣଚନ୍ଦ୍ର ଓହ୍ଲାଇ ଆସିଲା ? ଶିବ କଅଣ ପ୍ରସନ୍ନ ହୋଇ କନ୍ଦର୍ପଙ୍କୁ ପୁଣି ଶରୀର ଦାନ କଲେ ? ଯେ ମୋ ହୃଦୟକୁ ଦୁଃଖ ଦିଅନ୍ତି, କିନ୍ତୁ ଚକ୍ଷୁର ତୃପ୍ତିବିଧାନ କରନ୍ତି, ସେ କଅଣ ମତେ ସ୍ୱାଗତ ଜଣାଉଛନ୍ତି ? (ପ୍ରକାଶ୍ୟରେ) ସଖୀ କୁରଙ୍ଗିକା, ମତେ କୌତୁକ ଭଳି ଲାଗୁଛି ।

ବିଦୂ—(ରାଜାଙ୍କ ହାତଧରି) ଶ୍ରୀମତୀ, ପ୍ରକୃତରେ ତ କୌତୁକ ହୋଇଗଲା !

(କର୍ପୂରମଞ୍ଜରୀ ଲଜ୍ଜିତା ହେଲେ ।)

କୁର—ସଖୀ କର୍ପୂରମଞ୍ଜରୀ, ମହାରାଜଙ୍କୁ ସ୍ୱାଗତ କର ।
(କର୍ପୂରମଞ୍ଜରୀ ଉଠିବାକୁ ଉଦ୍ୟତ ହେଲେ ।)

ରାଜା (ତାଙ୍କର ହାତ ଧରି) ଚନ୍ଦ୍ରାନନା, ପୃଥୁଳ ସ୍ତନ ଭାରରେ ତୁମର କଟୀ ତ ନଇଁ ଯାଉଛି । ମୋତେ ସ୍ୱାଗତ ଜଣାଇବାପାଇଁ ଉଠି ତାକୁ ଆହୁରି ଭଙ୍ଗିଦିଅ ନାହିଁ । ତୁମକୁ ଏହିପରି ଅବସ୍ଥାରେ ଦେଖି ମୋର ନେତ୍ର ତୃପ୍ତି ଲାଭ କରୁ ।

ଆଉ ମଧ୍ୟ

ଗୋ ହରିଣାକ୍ଷି, ତୁମ ଆଗରେ ଦଳିତ ହରିଦ୍ରା ଅତି ତୁଚ୍ଛ; ଉଜ୍ଜ୍ୱଳ ସୁବର୍ଣ୍ଣ ମଧ୍ୟ କିଛି ନୁହେଁ ! ଚମ୍ପକପୁଷ୍ପ ମଧ୍ୟ ତୁମ ସହିତ ତୁଳନୀୟ ହୋଇ ନ ପାରେ । ମୋର ଏହି ଆଖି ଯାହା ତୁମକୁ ଦେଖିଲା, ତେଣୁ ମୁଁ ଏମାନଙ୍କୁ ସୁବର୍ଣ୍ଣ-ପୁଷ୍ପରେ ଅର୍ଚ୍ଚନା କରିବି ।

ବିଦୂ—ଆହେ ! ଘର ଭିତରେ ରହି ଶ୍ରୀମନ୍ତଙ୍କ ଦେହ ଝାଳରେ ଭିଜିଲେଣି । ତେବେ ମୁଁ ପଣତ କାନରେ ବିଞ୍ଚିଦିଏ ।

(ବିଞ୍ଚିଦେଲେ) ଆରେ ! ଆରେ ! ପଣତ ପବନରେ ଦୀପ ଲିଭିଗଲା ଯେ ! (ଚିନ୍ତା କରି ସ୍ୱଗତ) ଆଚ୍ଛା, ହେଉ, କ୍ରୀଡ଼ା-ଉଦ୍ୟାନକୁ ଯିବା । (ପ୍ରକାଶ୍ୟରେ) ଆହେ ! କଟିକଟିଆ ଅନ୍ଧାର ! ଚାଲ, ସୁଡ଼ଙ୍ଗ ବାଟଦେଇ କ୍ରୀଡ଼ା-ଉଦ୍ୟାନକୁ ଯିବା ।

(ସମସ୍ତେ ଯିବାକୁ ଲାଗିଲେ)

ରାଜା—(କର୍ପୂରମଞ୍ଜରୀଙ୍କର ହାତ ଧରି) ମୁଁ ତୁମର ହାତ ଧରିଛି, ତୁମେ ଧୀରେ ଧୀରେ ପାଦ ପକାଅ । କଳହଂସମାନଙ୍କର ଗତି ତୁମ ଗତି ତୁଳନାରେ ଚିରଦିନପାଇଁ ତୁଚ୍ଛ ହୋଇଯାଉ ।

(ସ୍ପର୍ଶସୁଖ ଅନୁଭବର ଅଭିନୟ କରି)

ତୁମ କରସ୍ପର୍ଶରେ ମୋ ଦେହରେ ଯେଉଁ ରୋମାଞ୍ଚ ଜାତ ହୋଇଛି, ତା' ତୁଳନାରେ କପୁଷଫଳର କଣ୍ଟକ ଏବଂ କଦମ୍ବଫୁଲର କେଶର କିଛି ନୁହେଁ ।

(ନେପଥ୍ୟେ)

୧ମ ଭାଟ—ଚନ୍ଦ୍ରୋଦୟ ମଣିମାଙ୍କୁ ସୁଖପ୍ରଦ ହେଉ ।

ଗାଢ଼ ଅନ୍ଧକାରରେ ଭୂମଣ୍ଡଳ ଆଚ୍ଛାଦିତ ହୋଇ ବୃକ୍ଷ ଭଳି ସ୍ଥାନ ଦେଖାଯାଉଥିଲା । କିନ୍ତୁ ବର୍ତ୍ତମାନ ପୂର୍ବଦିଗ ନୂତନ ଭୂର୍ଜପତ୍ର-ପରି ପିଙ୍ଗଳବର୍ଣ୍ଣ ଦିଶିଲାଣି । ଦେଖନ୍ତୁ, ଚନ୍ଦ୍ର ନିଜକଳାରେ

ପୂର୍ଣ୍ଣମଣ୍ଡଳ ରୂପ ଧାରଣ କରି ମୁଚୁକୁନ୍ଦ ଫୁଲର କେଶର ସଦୃଶ ସୁନ୍ଦର କିରଣ ବର୍ଷଣ କରୁଛନ୍ତି ।

ଆଉ ମଧ୍ୟ—

ଚନ୍ଦ୍ରର ଜ୍ୟୋତ୍ସ୍ନାରାଶି ଆକାଶରେ ଉଜ୍ଜ୍ୱଳ ହେବାରେ ଲାଗିଛି । ଏହା କୁଙ୍କୁମ କିମ୍ବା ଚନ୍ଦନ ନୁହେଁ, ମାତ୍ର ଦଶଦିଗରୂପୀ ବଧୂମାନଙ୍କର ମଣ୍ଡନ । କଙ୍କଣ ବା କୁଣ୍ଡଳ ନ ହେଲେ ମଧ୍ୟ ପୃଥିବୀର ଭୂଷଣ । ଏହା କନ୍ଦର୍ପର ଆୟୁଧ, ମାତ୍ର କାହାରିକୁ କ୍ଷୀଣ କରେ ନାହିଁ କି ମୂର୍ଚ୍ଛିତ କରେ ନାହିଁ ।

ବିଦୂଷକ ଆହେ, କନକଚଣ୍ଡର ଚନ୍ଦ୍ରୋଦୟ ବର୍ଣ୍ଣନା କଲ ।
ବର୍ତ୍ତମାନ ମାଣିକ୍ୟଚଣ୍ଡର ପାଳି ।

(ନେପଥ୍ୟେ)

୨ୟ ଭଟ—କ୍ରୀଡ଼ାଗୃହମାନଙ୍କରେ ଅଗୁରୁ-ଧୂପର ବତୀ ଜଳାହେଲାଣି, ଦୀପ ଲଗାହେବାରୁ ଉଜ୍ଜ୍ୱଳତା ପ୍ରକାଶ ପାଇଲାଣି, ସୁନ୍ଦର ମୁକ୍ତାମାଳମାନ (ସାଜସଜ୍ଜା ପାଇଁ) ଲମ୍ବିତ ହେଉଛନ୍ତି, ପାରା-ମାନଙ୍କୁ ରୁଦ୍ଧ କରାଯାଉଛି, ସୁନ୍ଦର ଶଯ୍ୟାମାନ ପ୍ରସ୍ତୁତ କରାଯାଉଛି, ଶତ ଶତ ଦୂତୀ କଥାବାର୍ତ୍ତା କରୁଛନ୍ତି ଏବଂ ମାନିନୀ ସ୍ତ୍ରୀମାନେ ଶଯ୍ୟା ନିକଟରେ (ମାନକରି) ବସିଲେଣି ।

ଆଉ ମଧ୍ୟ—

ଚନ୍ଦ୍ରର କିରଣାବଳି ଦିଗରୂପୀ ବଧୂମାନଙ୍କ ମୁଖରେ କର୍ପୂରଚୂର୍ଣ୍ଣ ଲେପନ କଲାଭଳି ଜଣାପଡ଼ୁଛି, ସକଳ-ଜନ-ଆନନ୍ଦ-ପ୍ରଦ ଚନ୍ଦନ ପରି ସ୍ନିଗ୍ଧ ଜ୍ୟୋତ୍ସ୍ନା ବର୍ଷଣ କରୁଛି, କ୍ଷୀଣ କନ୍ଦର୍ପକୁ ତ୍ରିଭୁବନରେ ବ୍ୟାପିବା ପାଇଁ ବଳବନ୍ତ କରୁଛି ଏବଂ ସଜଳ ମେଘରୁ ନିର୍ଗତ ବର୍ଷଧାରା ପରି ଶୋଭା ପାଉଛି ।

ବଧୂ—ହରଗ-ବଧୂମାନଙ୍କର ଭୂଷଣ, ଆକାଶ-ସରୋବରର ହଂସ, ରତି-ଉଦ୍ଦୀପକ ଚନ୍ଦ୍ର ଉଦୟ ହୋଇ ଉପରକୁ ଉଠିବାରେ ଲାଗିଛି ।

କୁରଙ୍ଗିକା—କନ୍ଦର୍ପ ଚନ୍ଦ୍ରର ଗର୍ବ ବଢ଼ାଉଛି, ମାନିନୀମାନଙ୍କର ମାନ ଚୂର୍ଣ୍ଣ କରୁଛି, ଆଉ ନୂତନ ଚମ୍ପାଫୁଲକୁ ଧନୁକରି ବ୍ରହ୍ମାଣ୍ଡ ଜୟ କରିବାରେ ଲାଗିଛି ।

(କର୍ପୂରମଞ୍ଜରୀଙ୍କ ପ୍ରତି) ପ୍ରିୟସଖୀ, ତୁମେ ଯେଉଁ ବସନ୍ତ ବର୍ଣ୍ଣନା ରଚନା କରିଥିଲ, ସେଥିରୁ ପଦଟିଏ ମୁଁ ମହାରାଜାଙ୍କ ଆଗରେ ପାଠ କରୁଛି ।

(କର୍ପୂରମଞ୍ଜରୀ ଲଜ୍ଜିତା ହେଲେ । କୁରଙ୍ଗିକା ପାଠକଲା ।)

ହସ୍ତୀଦନ୍ତ-ଗଢ଼ା ପଞ୍ଜରୀ ସମାନ
ଧବଳ ଚନ୍ଦ୍ର ମଣ୍ଡଳ,
ପୁତ୍ତଳ-କୋକିଳ ପରାୟେ କଳଙ୍କ -
ମୃଗ ତହିଁ କରେ ଖେଳ ।

ରାଜା—ବାଃ ! କର୍ପୂରମଞ୍ଜରୀଙ୍କର ଅର୍ଥ ଅଭିନବ, ଶବ୍ଦ ରମଣୀୟ, ଉକ୍ତି ବିଚିତ୍ର, ଆଉ ରସ ବି ପ୍ରଚୁର ।

(କର୍ପୂରମଞ୍ଜରୀଙ୍କ ପ୍ରତି)

ସୁନ୍ଦରୀ, ତୁମ ମୁଖକୁ ଦେଖି ଲୋକମାନେ ଚନ୍ଦ୍ର ବୋଲି ଭ୍ରମ କରନ୍ତୁ, ଏଇଥିପାଇଁ ବୋଧହୁଏ ଚନ୍ଦ୍ର କଳଙ୍କ ଛଳରେ ନିଜ ଦେହରେ ଦାଗ ଲଗାଇ ଦେଇଛି !

ଗୋ କୋମଳାଙ୍ଗୀ, ଯଦି ତୁମ ମୁଖକୁ ତରଳ ଖଡ଼ି ରଙ୍ଗରେ ରଞ୍ଜିତ କରାଯିବ, ଆଉ ଗଣ୍ଡସ୍ଥଳରେ କଜ୍ଜଳ ଲଗାଇ ଦିଆଯିବ, ତା' ହେଲେ ତୁମ ମୁହଁ ଚନ୍ଦ୍ରପରି ଦେଖାଯିବ ।

( ଚନ୍ଦ୍ର ପ୍ରତି )

ରେ ଚନ୍ଦ୍ର, ତୁ ନିର୍ଲଜ୍ଜ । କାରଣ, ଏହି ସୁନ୍ଦରୀର ଗଣ୍ଡ ତୋତେ ଶୁଭ୍ରତା ଦାନ କରିଥିଲେ ହେଁ ତୁ ଯାହା ଏହା ପାଖରେ ଭ୍ରମଣ କରୁନାହୁଁ !

(ନେପଥ୍ୟେ କୋଳାହଳ)

ରାଜା—ଏ କି କୋଳାହଳ ?

କର୍ପୂର -(ଭୟରେ) ପ୍ରିୟ ସଖୀ, କଥା କଅଣ, ବୁଝି ଆସିଲୁ ।
(କୁରଙ୍ଗିକା ଯାଇ ପୁଣି ପ୍ରବେଶ କଲା ।)

ବିଦୂ—ମହାରାଣୀ ପ୍ରିୟବନ୍ଧୁଙ୍କ ମୁଖ ଭଙ୍ଗି ଦେଖିଲେ ବୋଲି ମୋର ଅନୁମାନ ।

କୁର—ପ୍ରିୟସଖୀ, ମହାରାଜ ପ୍ରତାରଣା କରି ତୁମ ସହିତ ମିଳିତ ହେଲେ ବୋଲି ମହାରାଣୀ ଜାଣିପାରି ଆସୁଛନ୍ତି, ତେଣୁ କୁବ୍ଜ, ବାମନ, କିରାତ, ବର୍ଷବର, ସୌବିଦଲ୍ଲମାନେ ଏପରି କୋଳାହଳ କରୁଛନ୍ତି । *

କର୍ପୂ—(ଭୟରେ) ମହାରାଜ, ମତେ ବିଦାୟ ଦିଅନ୍ତୁ । ମୁଁ ଏହି ସୁଡ଼ଙ୍ଗ ବାଟେ ପଶି ରକ୍ଷାଗୃହକୁ ଚାଲିଯିବି । ଆପଣଙ୍କ ସହିତ ମୋର ମିଳନ ହେଲା ମହାରାଣୀ ଜାଣିପାରିବେ ନାହିଁ ।

(ସମସ୍ତଙ୍କର ପ୍ରସ୍ଥାନ)

---

* ପୂର୍ବେ ରାଜାମାନଙ୍କ ଅନ୍ତଃପୁରରେ ଏହି ପ୍ରକାର ଲୋକମାନେ ଭୃତ୍ୟରୂପେ ନିଯୁକ୍ତ ହେଉଥିଲେ । ବର୍ଷବର—ଅନ୍ତଃପୁରରଭୃତ୍ୟ-ବିଶେଷ । ସୌବିଦଲ୍ଲ—କଞ୍ଚୁକୀ ।

# ଚତୁର୍ଥ ଜବନିକାନ୍ତର

(ରାଜା ଓ ବିଦୂଷକଙ୍କର ପ୍ରବେଶ)

ରାଜା— ଉଃ ! ପ୍ରବଳ ଗ୍ରୀଷ୍ମ । ପବନ ବି ଗରମ । କିପରି ସହିବାକୁ ହେବ ? କାରଣ

ଦୁଇଟି ବସ୍ତୁ କାମାର୍ତ୍ତମାନଙ୍କ ପକ୍ଷରେ ଅତ୍ୟନ୍ତ ଅସହ୍ୟ ବୋଲି ମୋର ଧାରଣା । ଗୋଟିଏ ହେଉଛି ଗ୍ରୀଷ୍ମଋତୁ ଏବଂ ଆଉ ଗୋଟିଏ ହେଉଛି ପ୍ରିୟଜନବିଚ୍ଛେଦ ।

ବିଦୂ—କେତେକ ଲୋକଙ୍କୁ କନ୍ଦର୍ପ ପୀଡ଼ା ଦିଏ, ଆଉ କେତେକଙ୍କୁ ଗ୍ରୀଷ୍ମକାଳ ତାପ ଦିଏ । ମାତ୍ର ମୋ ଭଳି ଲୋକଙ୍କୁ କନ୍ଦର୍ପ ପୀଡ଼ା ଦେଇପାରେ ନାହିଁ କି ଗ୍ରୀଷ୍ମ ତାପ ଦେଇପାରେ ନାହିଁ ।

(ନେପଥ୍ୟେ)

ମୁଁ ତୁମ ଚୁଟିକୁ ସମୂଳେ ଉପାଡ଼ି ତୁମ ମୁଣ୍ଡକୁ କଅଣ ବିରୂପ ନ କରିବ ?

ରାଜା—(ହସିହସି) ବନ୍ଧୁ, କ୍ରୀଡ଼ାକାନନର ସ୍ୱଚ୍ଛନ୍ଦବିହାରୀ ଶୁକ କଅଣ କହିଲା ?

ବିଦୂ— (କ୍ରୋଧରେ ସହିତ) ଆରେ ଦାସୀପୁତ୍ର, ରହ, ତତେ ମୁଁ ଫାଶୀ ଦେଉଛି ।

(ନେପଥ୍ୟେ)

ତୁମ ଭଳିଆ ଲୋକ ସବୁ କରି ପାରନ୍ତି, ଯଦି ମୋର ଡେଣା ନ ଥାନ୍ତା ।

ରାଜା—(ଶୁଣି) କଅଣ ଉଡ଼ିଗଲା ! (ବିଦୂଷକଙ୍କୁ) ରାତି ଛୋଟ ହେଉଛି, ଦିନ ବଡ଼ ହେଉଛି, ଚନ୍ଦ୍ର ହ୍ରାସ ପାଉଛି, ସୂର୍ଯ୍ୟ ପ୍ରଚଣ୍ଡ ହେଉଛି । ଯେଉଁ ବିଧାତା ଗ୍ରୀଷ୍ମକାଳରେ ଏପରି ନିୟମ

ଚଳାଉଛି, ତାକୁ କାହିଁକି ଖରଧାରରେ କାଟି ଦିଆ-
ଯାଉନାହିଁ ?

ଅବଶ୍ୟ ଯଦି ପାଖରେ ପ୍ରିୟଜନ ଥାଏ, ତେବେ ଏ
ସମୟରେ ସଦୁପଯୋଗ କରିବା ଆବଶ୍ୟକ ।

ଗ୍ରୀଷ୍ମକାଳର ମଧ୍ୟାହ୍ନରେ ଚନ୍ଦନ ଲେପନ, ସନ୍ଧ୍ୟା ପର୍ଯ୍ୟନ୍ତ
ଆର୍ଦ୍ର ବସ୍ତ୍ର ପରିଧାନ, ରାତି ଆରମ୍ଭ ହେଲେ ସ୍ନାନକ୍ରୀଡ଼ା, ଶୀତଳ
ମଦ୍ୟପାନ ଏବଂ ରାତିର ଶେଷ ପ୍ରହରରେ ସୁରତକେଳି—କନ୍ଦର୍ପର
ଏ ପାଞ୍ଚଟି ଶର ଖୁବ୍ ଉତ୍କୃଷ୍ଟ; ଅନ୍ୟଗୁଡ଼ିକ ନିକୃଷ୍ଟ, ପୁରୁଣା ।

ବଦୂ—ପ୍ରିୟବନ୍ଧୁ, ସେପରି କୁହନାହିଁ । ଗ୍ରୀଷ୍ମକାଳରେ ପାଣ୍ଡୁରିଆ
ପାନ (ପତ୍ର) ବହୁତ ମିଳେ । ଆମ୍ବ, ତେଲ, କଅଁଳିଆ ଗୁଆ
ଆଉ କର୍ପୂରଚୂର୍ଣ୍ଣ-ସୁବାସିତ ଚନ୍ଦନ ମଧ୍ୟ ବହୁତ ମିଳେ ।
ତେଣୁ ଗ୍ରୀଷ୍ମଋତୁ ସବୁଦିନ ରହୁ ।

ରାଜା—କର୍ଣ୍ଣକୁ ପଞ୍ଚମ ସ୍ୱରଲହରୀର ମଧୁର ବଂଶୀଧ୍ୱନି, ମୁଖକୁ
ଶୀତଳ ଜଳ ସହିତ ତୃପ୍ତିଦାୟକ ମଦ୍ୟ, ଆଉ ଶୟନକୁ
ପୃଥୁଳ ସ୍ତନରେ ଚନ୍ଦନ ଲେପିଥିବା ସୁଖଦାୟିନୀ କାମିନୀ—
ଗ୍ରୀଷ୍ମକାଳରେ ଏହି ସ୍ୱଭାବଶୀତଳ ବସ୍ତୁଗୁଡ଼ିକ କେବଳ
ଭାଗ୍ୟବାନ ଲୋକକୁ ମିଳେ । ଏ ଗୁଡ଼ିକ ନିଦାଘ କାଳର
ମହୌଷଧି ।

ଆଉ ମଧ୍ୟ—

କର୍ଣ୍ଣରେ ଶିରୀଷ ଫୁଲର ଭୂଷଣ, ବକ୍ଷରେ ସିନ୍ଧୁବାର ଫୁଲର
ହାର, ଦେହରେ ଆର୍ଦ୍ର ବସ୍ତ୍ର, ନିତମ୍ବରେ ରତ୍ନଜଡ଼ିତ ଅଣ୍ଟାସୂତା,
ଦୁଇ ହସ୍ତରେ ନୂତନ ମୃଣାଳର କଙ୍କଣ—ଏହିପରି ସୁନ୍ଦର ବେଶ
ଗ୍ରୀଷ୍ମକାଳରେ ନାରୀମାନଙ୍କ ତାପ ସହିବାରେ ସମର୍ଥ କରେ ଏବଂ
ସେମାନଙ୍କର କାମପୀଡ଼ା ପ୍ରଶମ କରେ ।

ବିଦୂ—ଯେଉଁ ସ୍ତ୍ରୀମାନେ ମଧ୍ୟାହ୍ନରେ ଶ୍ଳକ୍ଷ୍ଣ ଗାଢ଼ ଚନ୍ଦନ ବୋଳି ହୁଅନ୍ତି, ସନ୍ଧ୍ୟାରେ ନସୁସିତ ସ୍ନାନ କରନ୍ତି ଏବଂ ଶଯ୍ୟାରେ ବିଞ୍ଚଣାର ଜଳାକଣାଦ୍ୱାରା ଯେଉଁମାନଙ୍କର ଦେହ ଓଦା ରହେ, କନ୍ଦର୍ପ ସେମାନଙ୍କର ଦାସତ୍ୱ ସ୍ୱୀକାର କରେ ।

ରାଜା—(ସ୍ମରଣର ଅଭିନୟ କରି) ସର୍ବାଙ୍ଗସୁନ୍ଦର ପ୍ରିୟଜନଙ୍କ ସହିତ ଯେଉଁମାନଙ୍କର ମିଳନ ହୁଏ, ସେମାନଙ୍କ ପାଇଁ ଦିବସଗୁଡ଼ିକ ମୁହୂର୍ତ୍ତ ମୁହୂର୍ତ୍ତ ପରି ଲାଗେ । କିନ୍ତୁ ଯେଉଁମାନଙ୍କୁ ପ୍ରିୟଜନ ଆଳନର ଆନନ୍ଦ ମିଳେ ନାହିଁ, ସେମାନଙ୍କ ପକ୍ଷରେ ଦିବସ ଦୁଃଖଦାୟକ ଏବଂ ମାଂସଭଳି ଅତି ଦୀର୍ଘ ବୋଧହୁଏ । ବନ୍ଧୁ, ତାଙ୍କର କିଛି ଖବର ଜାଣିଛ ?

ବିଦୂ—ଜାଣିଛି । କହୁଛି ଶୁଣ । ତୁମ ପକ୍ଷରେ ଏହା ଶୁଭ ଖବର । ଯେଉଁଦିନ ମହାରାଣୀ କର୍ପୂରମଞ୍ଜରୀଙ୍କୁ ରକ୍ଷାଗୃହରୁ ସୁଡ଼ଙ୍ଗ-ଦୁଆର ପର୍ଯ୍ୟନ୍ତ ଯାଉଥିବାର ଦେଖିଲେ, ସେହିଦିନଠାରୁ ସେ ସୁଡ଼ଙ୍ଗ ଦୁଆରକୁ ବହୁତ ପଥରରେ ମରାଇ କରି ବୁଜି ରଖିଛନ୍ତି । ଅନଙ୍ଗସେନା, କଳିଙ୍ଗସେନା, କାମସେନା, ବସନ୍ତ-ସେନା, ବିଭ୍ରମସେନା – ଏହି 'ସେନା' ନାମରେ ପାଞ୍ଚଜଣ ଚାମରଧାରିଣୀଙ୍କୁ ଚକଚକିଆ ଖଣ୍ଡାଧାରୀ ଏକ ହଜାର ପଦାତିକଙ୍କ ସହିତ କାରାଗାର ଜଗିବା ପାଇଁ ପୂର୍ବ ଦିଗରେ ନିଯୁକ୍ତ କରିଛନ୍ତି ।

ଅନଙ୍ଗଲେଖା, ଶଙ୍ଖଲେଖା, ଚନ୍ଦ୍ରଲେଖା, ମୃଗାଙ୍କଲେଖା, ବିଭ୍ରମଲେଖା—ଏହି 'ଲେଖା' ନାମର ପାଞ୍ଚଜଣ ସୈରନ୍ଧ୍ରୀଙ୍କୁ ଏକ ହଜାର ଧନୁର୍ଦ୍ଧରଙ୍କ ସହିତ ଦକ୍ଷିଣ ଦିଗରେ ନିଯୁକ୍ତ କରିଛନ୍ତି । ସେହି ଧନୁର୍ଦ୍ଧରମାନେ ସର୍ବଦା ଧନୁରେ ଶର ପ୍ରସ୍ତୁତ କରି ରଖିଛନ୍ତି ଏବଂ ଦୃଢ଼ବନ୍ଧର ତୂଣୀର ବାନ୍ଧି ସଜ୍ଜିତ ରହିଛନ୍ତି ।

କୁନ୍ଦମାଳା, ଚନ୍ଦନମାଳା, କୁବଳୟମାଳା କାଞ୍ଚନମାଳା, ବକୁଳମାଳା, ମଙ୍ଗଳମାଳା, ମାଣିକ୍ୟମାଳା—ଏଇ 'ମାଳା' ନାମରେ ସାତ ଜଣ ପିକଦାନ ଖଟଣିରେ ଥିବା ସ୍ତ୍ରୀଙ୍କୁ ପଶ୍ଚିମ ଦିଗରେ ନିଯୁକ୍ତ କରିଛନ୍ତି । ହାତରେ ନୂତନ ଖଡ୍ଗ କୁନ୍ତମାନ ଧରି ଏକ ସହସ୍ର ପଦାତିକ ସେମାନଙ୍କ ସହିତ ଅଛନ୍ତି ।

ଅନଙ୍ଗକେଳି, ପୁଷ୍କରକେଳି, କନ୍ଦର୍ପକେଳି, ସୁନ୍ଦରକେଳି, ଉତ୍ଫୁଲକେଳି—ଏଇ 'କେଳି' ନାମର ପାଞ୍ଚଜଣ ସ୍ନାନ ଦାୟିତ୍ବରେ ଥିବା ସ୍ତ୍ରୀଙ୍କୁ ଉତ୍ତର ଦିଗରେ ରହିବା ପାଇଁ ଆଦେଶ ଦେଇଛନ୍ତି । ଢାଲ ତରବାରି ଧରି ଖଡ୍‌ଷଣ ଦିଶୁଥିବା ଏକ ହଜାର ପଦାତିକ ସେମାନଙ୍କ ସଙ୍ଗରେ ଅଛନ୍ତି ।

ସେମାନଙ୍କ ଉପରେ ମନ୍ଦିରବଣ୍ଟା, କେଳିବଣ୍ଟା, କଲ୍ଲୋଳବଣ୍ଟା, ତରଙ୍ଗବଣ୍ଟା, ଅନଙ୍ଗବଣ୍ଟା—ଏଇ 'ବଣ୍ଟା' ନାମରେ ପାଞ୍ଚଜଣ କୁମାରୀ ପରିଚାରିକାଙ୍କୁ—ଯେଉଁମାନେ କି ହାତରେ ସୁନାର ବେତବାଡ଼ି ଧରି ଘଟରୂପେ ସୁରକ୍ଷିତ ପାଠ କରନ୍ତି—ସେନାଧ୍ୟକ୍ଷ କରିଛନ୍ତି ।

ରାଜା—ଆହେ ! ମହାରାଣୀଙ୍କର କି ଅନ୍ତଃପୁର ବିଭବ !

ବିଦୂ—ମିତ୍ର, ହେଇ, ସାରଙ୍ଗିକା ସଖୀ କଣ୍ଠୁ ଜାଇବା ପାଇଁ ଏଣେ ଆସୁଛି । ମହାରାଣୀ ବୋଧହୁଏ ତାଙ୍କୁ ପଠାଇଛନ୍ତି ।

(ସାରଙ୍ଗିକାର ପ୍ରବେଶ)

ସାର—ମହିମାଙ୍କର ଜୟ ହେଉ । ମହିମା, ମହାରାଣୀ ଜଣାଇଛନ୍ତି ଯେ ଆଜି ଚତୁର୍ଥୀରେ ବଟସାବିତ୍ରୀ ମହୋତ୍ସବ ହେବ । ଆପଣ 'କେଳିବମାନ' ପ୍ରାସାଦ ଆରୋହଣ କରି ସେହି ମହୋତ୍ସବ ଶୋଭା ଦର୍ଶନ କରିବେ ।

ରାଜା ମହାରାଣୀଙ୍କର ଯାହା ଆଦେଶ ।

(ଦାସୀ ଚାଲିଗଲା । ରାଜା ଓ ବିଦୂଷକ ପ୍ରାସାଦ ଆରୋହଣ କଲେ । ତା'ପରେ ଚର୍ଚ୍ଚରୀମାନଙ୍କର ପ୍ରବେଶ *)

ବିଦୂ—ମିତ୍ର ଦେଖ, ଏହି ନର୍ତ୍ତକୀମାନେ ନୃତ୍ୟ ଶେଷରେ ମଣିମୟ ପାତ୍ରରେ ଚନ୍ଦନଜଳ ପୂରାଇ ପରସ୍ପରକୁ ସିଞ୍ଚିବାକୁ ଲାଗିଛନ୍ତି । ସେମାନେ ମୁକ୍ତା ଅଳଙ୍କାରମାନ ପିନ୍ଧିଛନ୍ତି ଏବଂ ପବନରେ ସେମାନଙ୍କର ପଣତ ଉଡ଼ୁଛି ।

ଏବେ—

ବତିଶ ଜଣ ନର୍ତ୍ତକୀ ବର୍ତ୍ତୁଳ ଆକାରରେ ଭ୍ରମଣ କରୁଛନ୍ତି । ସେମାନଙ୍କର ପାଦ ଠିକ୍ ତାଳ ଅନୁସାରେ ପଡ଼ୁଛି । ଭୂମ ଅଗଣାରେ ଦଣ୍ଡରାସ ଚାଲିଛି ।

ଆଉ କେତେକ ନର୍ତ୍ତକୀ କାନ୍ଧ ଓ ମୁଣ୍ଡ, ବାହୁ ଓ ହାତ ସମାନ ରଖି, ଟିକିଏ ହେଲେ ଭୁଲ୍ ନ କରି, ତାଳଲୟ ଜଗି, ଦୁଇଧାଡ଼ି ହୋଇ ପରସ୍ପରର ଅଭିମୁଖକୁ ଆସୁଛନ୍ତି ।

ଆଉ କେତେକ ଦେହରୁ ନର୍ତ୍ତକୀ ରତ୍ନଖଚିତ କବଚ ଓହ୍ଲାଇ ଚନ୍ଦନଦ୍ୱାରା ଜଳଧାରା ଫିଙ୍ଗୁଛନ୍ତି । ସେହି ଜଳଧାରା ସେମାନଙ୍କ ପ୍ରିୟଜନଙ୍କ ଉପରେ କନ୍ଦର୍ପର ବରୁଣାସ୍ତ୍ର ପରି ପଡ଼ୁଛି ।

ହେଇ, ବଣାସିମାନେ କାଳି ଓ କଜ୍ଜଳରେ ଦେହକୁ କଳା କରି, ମୟୂରପୁଚ୍ଛର ଆଭରଣ ପିନ୍ଧି, ଶବର ବେଶରେ ଲୋକମାନଙ୍କୁ ଡରାଉଛନ୍ତି । ସେମାନଙ୍କର ଆଖି ତୀକ୍ଷ୍ଣ ଧନୁପରି ଦେଖାଯାଉଛି ।

ଆଉ କେତେକ ନର୍ତ୍ତକୀ ହାତରେ ନରମାଂସର ଉପହାର ଧରି, ହୁଙ୍କାରରେ ଶୃଗାଳ ପରି ରବ କରି, ବେତାଳୀବେଶରେ

---

* ଚର୍ଚ୍ଚରୀ—ନର୍ତ୍ତକୀ, ଯେଉଁମାନେ କ ଗୀତ ଗାଇ ବିଭିନ୍ନ ପ୍ରକାର ନୃତ୍ୟ ଦେଖାନ୍ତି ।

ଶ୍ମଶାନ-ଅଭିନୟ କରୁଛନ୍ତି । ସେମାନଙ୍କର ରୂପ ବଡ଼ ଭୟଙ୍କର ଦିଶୁଛି ।

ଏକ ନର୍ତ୍ତକୀ ଭୟଙ୍କର ହୁଡ଼ୁକ ବାଦ୍ୟ ବଜାଉ ଯାଉ, ମଧୁର ମର୍ଦ୍ଦଳ ଧ୍ୱନି କରି ତା' ସହିତ ନିଜର ଭ୍ରୂଲତା ଯୋଡ଼ିକ ନଚାଉଛି । ଏହିପରି ସେ ଦାସୀନାମ କରିବାରେ ଲାଗିଛି ।

ଆଉ କେତେକ ନର୍ତ୍ତକୀ କିଂଗୀତର ଲୟରେ ତାଳ ଠିକ୍ ରଖି, ପୁଣି ତାଳ ଅନୁସାରେ ନୂପୁରଧ୍ୱନି କରି ମଣ୍ଡଳାକାରରେ ଯୋଗୀନୀ-ନୃତ୍ୟ ଦେଖାଉଛନ୍ତି । ସେମାନଙ୍କର କଙ୍କିଣୀ ରଣଝଣ ରଣଝଣ ବାଜୁଛି ।

ଆଉ କେତେକ ନର୍ତ୍ତକୀ କୌତୁକରେ ଗୃହଭୃତ୍ୟକର ବେଶ ପିନ୍ଧି, ବଂଶୀ ବଜାଇ ବଜାଇ, କଳାବେଶରେ ଲୋକମାନଙ୍କୁ ହସାଇ ପ୍ରଣାମ କରୁଛନ୍ତି, ହସୁଛନ୍ତି ଏବଂ ଗୃହକୁ ଯାଉଛନ୍ତି ।

( ସାରଙ୍ଗିକାର ପ୍ରବେଶ )

ସାର—( ଆଗକୁ ଚାହିଁ ) ମହାରାଜ ତ ମରକତକୁଞ୍ଜକୁ ଗଲେଣି, କଦଳୀଗୃହ ଭିତରକୁ ମଧ୍ୟ ପ୍ରବେଶ କଲେଣି । ତାହାହେଲେ ମୁଁ ଆଗରେ ଯାଇ ମହାରାଣୀଙ୍କ ଆଜ୍ଞା ଜଣାଇ ଦିଏଁ । (ନିକଟକୁ ଯାଇ) ମଣିମାଙ୍କର ଜୟ ହେଉ । ମଣିମା, ମହାରାଣୀ ଜଣାଉଛନ୍ତି ଯେ ସେ ଆଜି ସନ୍ଧ୍ୟାବେଳକୁ ଆପଣଙ୍କୁ ବିବାହ କରାଇବେ ।

ବିଦୂ—ଆହେ । ଅସମୟରେ କଅଣ ପାଣିକଖାରୁ ଖସିଲା !

ରାଜା—ସାରଙ୍ଗିକା, କଥା କଅଣ, ଭଲ କରି କହ ।

ସାର—କହୁଛି ମଣିମା ! ଗତ ଚତୁର୍ଦ୍ଦଶୀ ଦିନ ମହାରାଣୀ ପଦ୍ମବନ ମଣ୍ଡପରେ ପାର୍ବତୀଙ୍କର ଏକ ପ୍ରତିମା ନିର୍ମାଣ କରାଇ ଭୈରବାନନ୍ଦଙ୍କ ଦ୍ୱାରା ପ୍ରତିଷ୍ଠା କରାଇଲେ ଏବଂ ଭୈରବାନନ୍ଦଙ୍କୁ ନିଜର

ଗୁରୁ କରି ତାଙ୍କଠାରୁ ଦୀକ୍ଷା ଗ୍ରହଣ କଲେ । ତେଣୁ ମହାରାଣୀ ସେହି ଯୋଗୀଶ୍ରେଷ୍ଠଙ୍କୁ ଗୁରୁ ଦକ୍ଷିଣା ନେବା ପାଇଁ ଅନୁରୋଧ କଲେ । ଭୈରବାନନ୍ଦ କହିଲେ—"ଯଦି ଗୁରୁଦକ୍ଷିଣା ଦେବ, ତେବେ ତାହା ମହାରାଜାଙ୍କୁ ଦିଅ ।" ମହାରାଣୀ କହିଲେ— "ଆପଣଙ୍କର ଯାହା ଆଜ୍ଞା ।" ଭୈରବାନନ୍ଦ ପୁଣି କହିଲେ— "ଲାଟ ଦେଶରେ ଚଣ୍ଡସେନ ନାମକ ଜଣେ ରାଜା ଅଛନ୍ତି । ତାଙ୍କ ଝିଅର ନାମ ଘନସାର ମଞ୍ଜରୀ । ଜ୍ୟୋତିଷୀମାନେ କହିଛନ୍ତି ଯେ ସେ ଚକ୍ରବର୍ତ୍ତୀ ରାଜାର ପତ୍ନୀ ହେବ । ତେଣୁ ମହାରାଜଙ୍କ ସହିତ ତାର ବିବାହ କରାଇବା ଉଚିତ । ତାହାଦ୍ୱାରା ମତେ ଗୁରୁଦକ୍ଷିଣା ମିଳିବ ଏବଂ ତୁମ ସ୍ୱାମୀ ମଧ୍ୟ ଚକ୍ରବର୍ତ୍ତୀ ହେବେ ।" ମହାରାଣୀ ହସି କରି କହିଲେ, "ଆପଣଙ୍କର ଯାହା ଆଜ୍ଞା ।" ତେଣୁ ସେ ଗୁରୁଦକ୍ଷିଣା କଥା ଆପଣଙ୍କୁ ଜଣାଇବା ପାଇଁ ମତେ ପଠାଇଛନ୍ତି ।

ବିଦୂ - (ହସି ହସି) ଆରେ ! ଏ କପଟ କଥା ! ମୁଣ୍ଡ ଉପରେ ସାପ, ଅନ୍ୟ ଦେଶରେ ବୈଦ୍ୟ ! ଆଜ ଏଠାରେ ବିବାହ, ଲାଟ ଦେଶରେ ଘନସାରମଞ୍ଜରୀ !

ରାଜା—ତୁମେ କଅଣ ଭୈରବାନନ୍ଦଙ୍କ ପ୍ରଭାବ ଆଖିରେ ଦେଖିନାହଁ ? ( ସାରଙ୍ଗିକାକୁ ) ଭୈରବାନନ୍ଦ ବର୍ତ୍ତମାନ କେଉଁଠାରେ ?

ସାର—ମହାରାଣୀ ଯେଉଁ ପ୍ରମୋଦ-ଉଦ୍ୟାନ ତିଆରି କରାଇଛନ୍ତି, ତା ମଝିରେ ଯେଉଁ ବରଗଛ ଅଛି, ତାହା ମୂଳରେଥିବା ଚାମୁଣ୍ଡା ଦେବୀଙ୍କ ମନ୍ଦିରକୁ ଭୈରବାନନ୍ଦ ଓ ମହାରାଣୀ ଆସିବେ । ଆଜ ଦକ୍ଷିଣା ଉଦ୍ଦେଶ୍ୟରେ କୌତୁକର ସହିତ ବିବାହ ସଂପନ୍ନ ହେବ । ତେଣୁ ଆପଣ ସେହିଠାରେ ଯାଇ ରହିଥିବେ ।

( ସାରଙ୍ଗିକାର ପ୍ରସ୍ଥାନ )

ରାଜା—ମିତ୍ର, ଏମନ୍ତ ଭୈରବାନନ୍ଦଙ୍କ କାମ ବୋଲି ମୋର ଧାରଣା ।

ବିଦୂ—ହଁ, ସେଇଆ । ତେବେ ଚନ୍ଦ୍ର ବିନା ଚନ୍ଦ୍ରକାନ୍ତମଣିର ଜଳକୁ ଆଉ କିଏ ତରଳାଇ ପାରିବ ? ଶରତ ପବନ ବିନା ଶେଫାଳିଫୁଲକୁ ଆଉ କିଏ ଫୁଟାଇପାରିବ ?

× × × ×

(ଭୈରବାନନ୍ଦଙ୍କର ପ୍ରବେଶ)

ଭୈର—ବଟବୃକ୍ଷ ମୂଳରେ ଯେଉଁ ସୁଡ଼ଙ୍ଗ ଖୋଳାଯାଇଛି, ତାହାର ଦ୍ୱାରକୁ ଆଚ୍ଛାଦିତ କରି ଏହି ଚାମୁଣ୍ଡାମୂର୍ତ୍ତି ପ୍ରତିଷ୍ଠିତ । (ଏକ ହାତରେ ପ୍ରଣାମ କରି ପାଠ କଲେ ।)

ମହାକାଳ ରୁଦ୍ରଙ୍କର ପ୍ରଳୟ ବିଧାନ
ମାଗୋ ଚଣ୍ଡୀ ଅଟେ ତୋର କେଳିନିକେତନ ।
ତହିଁ ଭୁଞ୍ଜ ପରମେଷ୍ଠୀ— କପାଳ-ପାତ୍ରରେ
ପ୍ରାଣୀରକ୍ତରୂପୀ ସୁରା ପିଇ ମୋଦଭରେ ।

(ବସି) ଏପର୍ଯ୍ୟନ୍ତ କଅଣ କର୍ପୂରମଞ୍ଜରୀ, ସୁଡ଼ଙ୍ଗ ଦ୍ୱାରରୁ ବାହାରୁ ନାହିଁ !

(ସୁଡ଼ଙ୍ଗର ଦ୍ୱାର ଖୋଲି କର୍ପୂରମଞ୍ଜରୀଙ୍କର ପ୍ରବେଶ)

କର୍ପୂ—ଭଗବାନ୍, ମୋର ପ୍ରଣାମ ଗ୍ରହଣ କରନ୍ତୁ ।

ଭୈର—ଯୋଗ୍ୟ ବର ଲଭକର । ଏଠି ବସ ।

(କର୍ପୂରମଞ୍ଜରୀ ବସିଲେ)

ଭୈର—(ସ୍ୱଗତ) ମହାରାଣୀ କଅଣ ଏପର୍ଯ୍ୟନ୍ତ ଆସୁନାହାନ୍ତି !

(ମହାରାଣୀଙ୍କର ପ୍ରବେଶ)

ରାଣୀ—(କ୍ରମେ କ୍ରମେ ଉପସ୍ଥିତ ହୋଇ ଏବଂ ଚାହିଁ) ଏଇ-ଭଗବତୀ ଚାମୁଣ୍ଡା । (ପ୍ରଣାମ କରି ଏବଂ ଚାହିଁ) ଆରେ ! ଏ ତ

କର୍ପୂରମଞ୍ଜରୀ ! ଏ କି କଥା ! (ଭୈରବାନନ୍ଦଙ୍କୁ) ମୁଁ ମୋ ଘରେ ବିବାହ ସାମଗ୍ରୀ ପ୍ରସ୍ତୁତ କରି ରଖିଆସିଛି । ଯାଉଛି, ସେଗୁଡ଼ିକ ନେଇଆସେଁ ।

ଭୈରବ—ଯାଅ ବତ୍ସେ !

(ରାଣୀ କ୍ରମେ କ୍ରମେ ନିଷ୍କ୍ରାନ୍ତ ହେଲେ ।)

ଭୈରବ—(ହସି ସ୍ୱଗତ) କର୍ପୂରମଞ୍ଜରୀ ନିଜ ସ୍ଥାନରେ ଅଛି କି ନାହିଁ, ଦେଖିବାକୁ ଗଲା । (ପ୍ରକାଶ୍ୟରେ) ଝିଅ କର୍ପୂରମଞ୍ଜରୀ, ସୁଡ଼ଙ୍ଗ ବାଟରେ ଅତି ଶୀଘ୍ର ଯାଇ ନିଜ ସ୍ଥାନରେ ରହ । ମହାରାଣୀ ଫେରିଆସିଲେ ପୁଣି ଆସିବୁ ।

(କର୍ପୂରମଞ୍ଜରୀ ସେହିପରି କଲେ ।)

ରାଣୀ—ଏଇ ତ ରକ୍ଷାଗୃହ । (ଭିତରକୁ ଯାଇ ଏବଂ ଗୁହାଁ) ଆରେ ! କର୍ପୂରମଞ୍ଜରୀ ତ ଅଛି ' ତା ହେଲେ ଏହାର ଭଳି ଆଉଜଣକୁ ମୁଁ ଦେଖିଲି । ବତ୍ସେ କର୍ପୂରମଞ୍ଜରୀ, ତୋ ଦେହ କିପରି ଅଛି ? (କାହାରି ସହିତ କଥାବାର୍ତ୍ତା କଲି ଭଳି' କଅଣ କହୁଛୁ ? ତୋ ଦେହରେ ପୀଡ଼ା ହେଉଛି ? (ସ୍ୱଗତ) ଆଚ୍ଛା, ପୁଣି ସେଠାକୁ ଯାଏଁ । (ଫେରି ଏବଂ ଏକ ପାଖକୁ ଗୁହାଁ) ଆଗୋ ସଖୀମାନେ, ବିବାହ-ଉପକରଣ ସବୁ ଧରି ଶୀଘ୍ର ଆସ ।

(ରାଣୀ ଆସିବାକୁ ଲାଗିଲେ । ଇତିମଧ୍ୟରେ କର୍ପୂରମଞ୍ଜରୀ ପ୍ରବେଶ କରି ପୂର୍ବ ପରି ବସିଗଲେ ।)

ରାଣୀ—(ଆଗକୁ ଗୁହାଁ) ଆରେ ! ଏ ତ କର୍ପୂରମଞ୍ଜରୀ !

ଭୈରବ—ବତ୍ସେ, ବିଭ୍ରମଲେଖା ବିବାହ ସାମଗ୍ରୀ ଆଣିଲ ?

ରାଣୀ—ବିବାହସାମଗ୍ରୀ ଆସିଲା । କିନ୍ତୁ ଘନସାରମଞ୍ଜରୀ ପାଇଁ
ଉପଯୁକ୍ତ ଆଭରଣ ଛାଡ଼ିଦେଇ ଆସିଲା । ତେଣୁ ମୁଁ ପୁଣି ଟିକିଏ
ଯାଉଛି ।

ଭୈରବ—ଆଚ୍ଛା ଯାଅ ।

(ରାଣୀ ନିଷ୍କ୍ରାନ୍ତ ହେଲେ ।)

ଭୈରବ—ଝିଅ କର୍ପୂରମଞ୍ଜରୀ, ପୁଣି ସେହିପରି କର ।

(କର୍ପୂରମଞ୍ଜରୀ ସେହିପରି କଲେ ।)

ରାଣୀ—(ରକ୍ଷାଗୃହ ଭିତରକୁ ଯାଇ ଏବଂ କର୍ପୂରମଞ୍ଜରୀଙ୍କୁ ଦେଖି)
ଆରେ ! ସାଦୃଶ୍ୟ ଯୋଗୁଁ ମୋର ଭ୍ରମ ଜାତ ହୋଇଛି ।
(ସ୍ୱଗତ) ମହାଯୋଗୀଙ୍କର ଧ୍ୟାନ-ବିମାନ ନିର୍ବିଘ୍ନରେ ଗତି
କରେ । ସେ ବସିଥିବାରେ ତାକୁ ନିଶ୍ଚୟ ଆଣିଛନ୍ତି ।
(ପ୍ରକାଶ୍ୟରେ) ସଖୀମାନେ, ମୁଁ ଯାହା ଯାହା କହିଲି, ସେ
ସମସ୍ତ ଧରି ଶୀଘ୍ର ଆସ ।

(ପୁଣି ସୁଡ଼ୁଙ୍ଗା ମାର୍ଗରେ ପ୍ରବେଶ କରି କର୍ପୂରମଞ୍ଜରୀଙ୍କୁ
ଚାହିଁ) କି ସାଦୃଶ୍ୟ !

ଭୈରବ—ମହାରାଣୀ, ବସ ; ମହାରାଜ ମଧ୍ୟ ଆସିଲେଣି ।

[ରାଜା, ବିଦୂଷକ ଏବଂ ସାରଙ୍ଗିକାଙ୍କର ପ୍ରବେଶ]

ଭୈରବ—ମହାରାଜଙ୍କୁ ଆସନ ଦିଅ ।

(ସମସ୍ତେ ଯଥାଯୋଗ୍ୟ ଆସନରେ ବସିଲେ ।)

ରାଜା—(କର୍ପୂରମଞ୍ଜରୀଙ୍କୁ ଲକ୍ଷ୍ୟ କରି) କନ୍ଦର୍ପର ପତାକା-ଧାରିଣୀ
ଶରୀର ଧାରଣ କଲାପରି ଜଣାପଡ଼ୁଛି ! ଶୃଙ୍ଗାରରସର ଶୋଭା
ସତେ ଯେପରି ମୂର୍ତ୍ତି ପରିଗ୍ରହ କରିଛି ! ପୂର୍ଣ୍ଣିମା ଚନ୍ଦ୍ରର ଜ୍ୟୋତ୍ସ୍ନା
ଦିନରେ ପ୍ରକାଶ ପାଇଲା ଭଳି ବୋଧହେଉଛି ! ଆଜି ମଧ୍ୟ ଏ
ସୁନ୍ଦରୀ ଉତ୍କୃଷ୍ଟ ଗୁଣମାନଙ୍କର ମାଣିକ୍ୟ ପେଡ଼ି, ଅଞ୍ଜନ

ଲଗାଇବାର ରତ୍ନକାଠି, ରତ୍ନ-ପୁଷ୍ପଭୂଷିତା ବସନ୍ତଶୋଭା ପରି ପ୍ରତୀତ ହେଉଛନ୍ତି !

ଏହାର ରୂପଶୋଭା କନ୍ଦର୍ପର ବିଶ୍ୱ-ବିଜୟ-ପତାକା ସଦୃଶ । ଏଭଳି ରୂପଶୋଭା ଯାହାର ଦୃଷ୍ଟିଗୋଚର ହୁଏ, ପ୍ରତାପୀ କନ୍ଦର୍ପ ଧନୁରେ ଶର ଚଢ଼ାଇ ତା'ହୃଦୟରେ ବାସ କରେ ।

ବିଦୂ—(ଏକା ରାଜାଙ୍କୁ) ଆହେ, ତୁମ ଇଚ୍ଛା ପୂର୍ଣ୍ଣ ହେଲାଣି । ତଥାପି ନୌକା କୂଳରେ ଲାଗିଲେ ମଧ୍ୟ ବିଶ୍ୱାସ ନାହିଁ । ତେଣୁ ଚୁପ୍ ହୋଇ ବସ ।

ରାଣୀ—( କୁରଙ୍ଗିକାକୁ ) ତୁ ମହାରାଜାଙ୍କୁ ବେଶ କରି ଦେ । ସାରଙ୍ଗିକା ଘନସାରମଞ୍ଜରୀଙ୍କୁ ବେଶ କରୁ ।

(ଦୁହେଁ ଦୁହିଁଙ୍କୁ ବେଶ କରିବାରେ ଲାଗିଲେ ।)

ଭୈରବ—ପୁରୋହିତଙ୍କୁ ଡ଼କାଅ ।

ରାଣୀ—(ରାଜାଙ୍କୁ) ଅର୍ଯ୍ୟପୁତ୍ର, ଆର୍ଯ୍ୟ କପିଞ୍ଜଳ ତ ଅଛନ୍ତି । ତାଙ୍କୁ ପୁରୋହିତ କରନ୍ତୁ ।

ବିଦୂ—ମୁଁ ପ୍ରସ୍ତୁତ ଅଛି ମିତ୍ର । ମୁଁ ଉତ୍ତରୀୟରେ ଗଣ୍ଠି ପକାଉଛି, ତୁମେ ତୁମ ହାତରେ କର୍ପୂରମଞ୍ଜରୀଙ୍କର ହାତ ଧର ।

ରାଣୀ—(ଚମକି ପଡ଼ି) କର୍ପୂରମଞ୍ଜରୀ କାହିଁ ?

ଭୈରବ—(ରାଣୀଙ୍କ ଭାବ ବୁଝିପାରି ବିଦୂଷକଙ୍କୁ) ତୁମେ 'ଘନସାର-ମଞ୍ଜରୀ' ନାମକୁ କର୍ପୂରମଞ୍ଜରୀଙ୍କର ଅନ୍ୟ ନାମ ବୋଲି ଭାବିଛ, ତେଣୁ ଭ୍ରମରେ ପଡ଼ିଲ ।

ରାଜା—(କର୍ପୂରମଞ୍ଜରୀଙ୍କ ହାତ ଧରି) କଦଳୀଲତାର ସୁନ୍ଦର ଫଳରେ ଏବଂ କେତକୀ ଫୁଲର ଭିତର ପାଖୁଡ଼ାମାନଙ୍କରେ ଯେଉଁ କଣ୍ଟକ ଥାଏ, ସେହିଗୁଡ଼ିକ ବୋଧହୁଏ ମୋ ଦେହରେ

ସୁନ୍ଦରୀର କରସ୍ପର୍ଶ ଯୋଗୁ ବନ୍ଧନ ସେମାନଙ୍କରେ ପରିଣତ ହୋଇଛି ।

ବିଦୂ—ମିତ୍ର, ଅଗ୍ନି ପ୍ରଦକ୍ଷିଣ କର । ଅଗ୍ନିରେ ଲାଜାଞ୍ଜଳି ନିକ୍ଷେପ କର । (ରାଜା ଅଗ୍ନି ପ୍ରଦକ୍ଷିଣ କଲେ । କର୍ପୂରମଞ୍ଜରୀ ଧୂଆଁ ଯୋଗୁ ମୂର୍ଦ୍ଧ ବୁଲାଇ ଠିଆ ହେଲେ । ରାଜାଙ୍କ ବିବାହ ସରିଲା । ରାଣୀ ପରିଜନମାନମାନଙ୍କ ସହିତ ନିଷ୍କ୍ରାନ୍ତ ହେଲେ ।)

ଭୈରବ—ପୁରୋହିତଙ୍କୁ ବିବାହର ଦକ୍ଷିଣା ଦାନ କର ।

ରାଜା—ମିତ୍ର, ତୁମକୁ ଶହେ ଗ୍ରାମ ଦିଆଗଲା ।

ବିଦୂ—ମଙ୍ଗଳ ହେଉ । (ନାଚିଲେ)

ଭୈରବ—ମହାରାଜ, ତୁମର ଆଉ କି ମଙ୍ଗଳ କରିବି ?

ରାଜା—ଯୋଗୀଶ୍ୱର, ଏହାଠାରୁ ଆଉ ଅଧିକ ମଙ୍ଗଳ କଅଣ ଅଛି ?

କୁନ୍ତଳରାଜସୁତା କର୍ପୂରମଞ୍ଜରୀଙ୍କର କରସ୍ପର୍ଶରେ ମୋର ଯେଉଁ ସୁଖ ବର୍ଦ୍ଧିତ ହୋଇଛି; ତାହାଦ୍ୱାରା ମୁଁ ସ୍ୱର୍ଗସୁଖକୁ ମଧ ତୁଚ୍ଛ ମନେ କରୁଛି । ଆଉ ମଧ୍ୟ ମୁଁ ଚକ୍ରବର୍ତ୍ତୀ ପଦ ଲାଭ କରି ପୃଥିବୀବ୍ୟାପୀ ରାଜ୍ୟପାଳନ କରୁଛି ।

ତଥାପି ଏହା ହେଉ—

ସମସ୍ତ ସଜ୍ଜନ ସତ୍ୟରେ ଚିର ଆନନ୍ଦ ଲାଭ କରନ୍ତୁ, ଦୁର୍ଜନଗଣ ସର୍ବଦା ଦୁଃଖ ଭୋଗ କରନ୍ତୁ; ବ୍ରାହ୍ମଣମାନଙ୍କର ଆଶୀର୍ବାଦ ସର୍ବଦା ସତ୍ୟ ହେଉ, ମେଘ ସଞ୍ଚିତ ଜଳକୁ ଶସ୍ୟର ଆବଶ୍ୟକତା ଅନୁସାରେ ବର୍ଷଣ କରୁ, ଲୋକମାନେ ଲୋଭ ପ୍ରତି ପରାଙ୍ମୁଖ ହୁଅନ୍ତୁ ଏବଂ ସମସ୍ତଙ୍କର ମନ ପ୍ରତିକ୍ଷଣ ଧର୍ମରେ ରହୁ ।

( ସମସ୍ତଙ୍କର ପ୍ରସ୍ଥାନ )

———

# ପ୍ରଥମଂ ଜବନିକାନ୍ତରମ୍

ଭଦ୍ଦଂ ଭୋଦୁ ସରସ୍ସଈଅ କଇଣୋ ଣନ୍ଦନ୍ତୁ ବାସାଇଣୋ
ଅଣ୍ଣାଣଂ ବି ପରଂ ପଅଟ୍ଟଦୁ ବରା ବାଣୀ ଛଇଲ୍ଲପ୍ପିଆ ।
ବଚ୍ଛୋମୀ ତହ ମାଅଦ୍ଧୀ ଫୁରଦୁ ଣୋ ସା କିଂ ଚ ପଞ୍ଚାଲିଆ
ରୀଦୀଓ ବିଲିହନ୍ତୁ କବ୍ବକୁସଲା ଜୋହ୍ନଂ ଚଓରା ବିଅ । ୧

ଅବି ଅ ।

ଅକଳିଅ ପରିରମ୍ଭବିବ୍ଭମାଇଁ
ଅଜଣିଅ ଚୁମ୍ବଣଡମ୍ବରାଇଁ ଦୂରମ୍ ।
ଅଘଡ଼ିଅଘଣତାଡଣାଇଁ
ଣିଚ୍ଚଂ ଣମହ ଅଣଙ୍ଗରଈଣମୋହଣାଇଁ । ୨ ।

ଅବି ଅ ।

ସସିହଣ୍ଡମଣ୍ଡଣାଣଂ ସମୋହଣସାଣଂ ସୁରଅଣପିଆଣମ୍ ।
ଗିରିସଗିରିନନ୍ଦସୁଆଣଂ ସଂଘାଡ଼ୀ ବୋ ସୁହଂ ଦେଉ । ୩ ।

ଅବି ଅ ।

ଈସାରୋସପ୍ପସାଦପ୍ପଣଦିସୁ ବହୁସୋ ସଗ୍ଗଗଙ୍ଗାଜଲେହିଂ
ଆମୂଲଂ ପୂରିଦାଏ ତୁହିଣଅରଅଳାରୁପ୍ପସିପ୍ପୀଅ ରୁଦ୍ଦୋ ।
ଜୋହ୍ଣାମୁତ୍ତାହଲିଲ୍ଲଂ ଣଅମଉଳିଣିହିତ୍ତଗ୍ଗହତ୍ଥେହିଁ ଦୋହିଁ
ଅଗ୍ଘଂ ସିଗ୍ଘଂ ବ ଦେନ୍ତୋ ଜଅଇ ଗିରିସୁଆପାଅପଙ୍କେ-
ରୁହାଣମ୍ । ୪ ।

( ନାନ୍ଦ୍ୟନ୍ତେ )

ସୂତ୍ରଧାରଃ ( ପରିକ୍ରମ୍ୟ ନେପଥ୍ୟାଭିମୁଖମବଲୋକ୍ୟ ) କିଂ ଉଣ
ଣଟ୍ଟପଅରୋ ବିଅ ଦୀସଇ ଅମ୍ହାଣଂ କୁସୀଲବାଣଂ

ପରିଜଣେଣ । ଜଣେଣ ଏବ ମହତ୍ତାଣି ଆଇଁ ସିଅଆଇଁ ଉଚ୍ଚିଣେଦି । ଲଅବ କୁସୁମାବଲୀଓ ଗୁମ୍ଫେଦି । ଅଣ୍ଣା ପଡ଼ିସୀସଆଇଁ ପଡ଼ିସାରେଦି । କାବି କଣ୍ଠ, ବଣ୍ଣିଆଓ ପଣ୍ଡଏ ବଣ୍ଣେଦି । ଏସ ବଂସେ ଠାଏଦୋ ହଠାଣେ । ଉଅଂ ସାଣା ପଡ଼ିସାସିଅନ୍ତି । ଇଦେ ତିଣ୍ଣି ମିଅଙ୍କା ସଜ୍ଜୀଅନ୍ତୁ । ଏସ କାଂସତାଳାଣଂ ପକ୍ଖାଳଣୁଜ୍ଜଳାଣଂ ହଲ୍ଲି ବୋଲେ । ଏଦଂ ଧ ଆଗୀଦ ମାଲବାଅଦି । ତାଂ କିଂଧି କୁଡ଼ୁମ୍ବଂ ହକ୍କାରଅ ପୁଚ୍ଛିସ୍ସମ୍ । ( ନେପଥ୍ୟାଭିମୁଖମ୍-ବଲୋକ୍ୟ ସଂଜ୍ଞାପୟତି । )

( ତତଃ ପ୍ରବିଶତି ପାରିପାର୍ଶ୍ୱିକଃ । )

ପାରିପାର୍ଶ୍ୱିକଃ—ଆଣବେଦୁ ଭାବୋ ।

ସୂତ୍ରଧାରଃ—( ବିଚିନ୍ତ୍ୟ ) କିଂ ଉଣେଣ ପଅଣ୍ଡା ଭଅ ଦାସଧ ।

ପାରି—ଭାବ, ସଞ୍ଚଅଂ ଣଚ୍ଚିଦବ୍ବମ ।

ସୂତ୍ର—କୋ ଉଣ ତସ୍ସ କଇ ?

ପାରି—ଭାବ କହିଜ୍ଜଦୁ ଏଦଂ କୋ ଭଣେଇ ରଅଣିବଲ୍ଲହସିଦ୍ଧନ୍ତେ । ରହୁଉଲଚୂଡ଼ାମଣିଣୋ ମହେନ୍ଦପାଲସ୍ସ କୋ ଅଗୁରୁ । *

ସୂତ୍ର—( ବିଚିନ୍ତ୍ୟ ) ପଦ୍ମଣୋତ୍ତରଂ କଖ୍ଖ ଏଦମ୍ । ( ପ୍ରକାଶମ୍ ) ରାଅ ସେହ ରେ ।

ପାରି—ସୋ ଏଦସ୍ସ କଇ ।

ସୂତ୍ର—କିଂ ସଚ୍ଚଅମ୍ ?

ପାରି—(ସ୍ୱଗତ) କଧିଦଂ ଜ୍ଞେବ ଛଇଲ୍ଲେଣ୍ଡଂ ।
ସୋ ସଣ୍ଠଓ ଭି ଭଣଈ ଦୂରଂ ଜୋ ଣାଡ଼ଆଇଁ ଏଣୁହରଇ ।
କ୍ଷଂ ଉତ୍ତ ଏତ୍ଥ ପବେଅସବକ୍‌କମ୍ମାଇଂ ଣ କେବଲଂ
ହୋନ୍ତି । ୬

ସୂତ୍ର—(ବିଚିନ୍ତ୍ୟ) ତା କଂ ଭି ସକ୍‌କଅଂ ପରିହରିଅ ପାଉଅବନ୍ଧେ
ପଅଟ୍ଟୋ କଈ ।

ପାରି—ସବ୍‌ବଭାସାଚଉରେଣ ତେଣ ଭଣିଦଂ ଜ୍ଞେବ । ଯଧା—
ଅତ୍ଥଣି ଏସା ତେ ଛିଅ ସଦ୍ଧା ତେ ଚେଅ ପରିଣି ମନ୍ତାଇଂ ।
ଉତ୍ତିବିସେସୋ କବ୍‌ବୋ ଭାସା ଜା ହୋଇ ସା ହୋଦୁ । ୭

ଅବି ଅ ।

ପରୁସା ସକ୍‌କଅବନ୍ଧା ପାଉଅବନ୍ଧୋ ବି ହୋଇ ସୁଉମାରେ ।
ପୁରୁସମହିଲାଣଁ ଜେତ୍ତିଅମିହନ୍ତରଂ ତେତ୍ତିଅ ମିମାଣମ୍ । ୮

ସୂତ୍ର—ତା ଅପ୍‌ପା କଂ ଣ ବଣ୍‌ଣିଦୋ ତେଣ ।

ପାରି—ସୁଣୁ । ବଣ୍‌ଣିଂ ଦୋ ଜ୍ଞେବ ତକ୍‌କାଲକଇଣଂ ମଜ୍‌ଝମ୍ମି
ମିଅଙ୍କ ଲେହାକହାଆରେଣ ଅବରାଇଏଣ । ଜଧା—
ବାଲକଈ କଇରାଓ ଣିବ୍‌ଭଅରାଅସ୍‌ସ ତହ ଉବଜ୍‌ଝାଓ ।
ଇଅ ଜସ୍‌ସ ପରଂପରଏ ଅପ୍‌ପା ମାହପ୍‌ପମାରୂଢୋ । ୯
ସୋ ଅସ୍‌ସ କଈ ସିରିରାଅସେହରେ ତହୁଅଣଂ ପିଧବେଲନ୍ତ ।
ହରିଣଙ୍କ ପାଲସିଦ୍ଧି ଏ ଣିକ୍‌କଲଙ୍କା ଗୁଣା ଜସ୍‌ସ । ୧୦

ସୂତ୍ର—ତା ବେଣ ସାମାହିଟ୍ଠୋ ପଉତ୍ତଧ ।

ପାରି—ଗୁଜ୍ଜହାଣକୂଲ ମୌଳିମାଲିଆ ରାଅସେହରକଇନ୍ଦଗେହିଣୀ ।
ଭତ୍ତୁଣୋ କଦିମବନ୍ତୀସୁନ୍ଦରୀ ସା ପଉଞ୍ଜିଇଦୁମେଦମିଚ୍ଛଦି । ୧୧

ଜଞ —

ଚଣ୍ଡବାଲଧରଣୀହରଣୋଙ୍କ ଚକ୍କବଟ୍ଟିପିଅଲ୍ଲହଣିମିତ୍ତଂ ।
ଏତ୍ଥଅ ସଙ୍ଗଅବରେ ରସଯୋଭେ କୁନ୍ତଲଙ୍କ ବସୁଅଂ
ପଚ୍ଚେଣେଇ । ୧୨

ସୂତ୍ର—ତା ଏହ୍ମ । ଅଣନ୍ତରକରଣିଜ୍ଜଂ ସମ୍ପାଦେହ୍ମ । ଜଦୋ ମହାରାଅଦେବୀଣଂ ଭୂମିଅଂ ଘେତ୍ତୂଣ ଅହ୍ମେ ଅହ୍ମଭାରଆ ଅ ଜବଣିଅନ୍ତରେ ବଟ୍ଟମ୍ଭ ।

( ଇତି ପରିକ୍ରମ୍ୟ ନିଷ୍କ୍ରାନ୍ତୌ । )

ପ୍ରସ୍ତାବନା

( ତତଃ ପ୍ରବିଶତି ରାଜା ଦେବୀ ବିଦୂଷକୋ ବିଭବତଶ୍ଚ ପରିବାରଃ ସର୍ବେ ପରିକ୍ରମ୍ୟ ଯଥୋଚିତ ମୁପବିଶନ୍ତି ।)

ରାଜା—ଦେବି ଦକ୍ଖିଣାହ୍ମବଣେରଦଣୋହଣି ! ବଡ଼୍ଢାବୀଅସି ଇମିଣା ବସନ୍ତାରମ୍ଭେଣ । ଜଦୋ—

ବମ୍ଭୋଟ୍ଠ ବହ୍ମଲଂ ଣ ଦେନ୍ତି ମଅଣଂ ଣୋ ଗନ୍ଧତେଲ୍ଲାବଲୀ
ବେଣୀଓ ବିରଅନ୍ତି ଲେନ୍ତି ଣ ତହା ଅଙ୍ଗମ୍ମି କୁପ୍ପାସଅଂ ।
ଜଂ ବାଲା ମୁହକୁଙ୍କୁମମ୍ମି ବି ଘଣେ ବଟ୍ଟନ୍ତି ଢିଲ୍ଲଅରା
ତଂ ମଣ୍ଣେ ସିସିରଂ ବିଣିକଅ ବଲା ପତ୍ତୋ ବସନ୍ତୂସବୋ । ୧୩

ଦେବୀ—ଦେବ ! ଅହଂ ବି ଭୁଜଙ୍ଗ ପଢ଼ିବତ୍ତବଆ ଭଇସ୍ସମ ।
ଜଧା—

ଫୁଲ୍ଲନ୍ତି ଦନ୍ତର ଅଣାଇ ତଏ ଉସାରେ
ଈସୀସ ଚନ୍ଦରଣରସମ୍ମି ମଣଂ କୁଣନ୍ତି ।

ଏଣ୍ ହ୍ଣିଂ ସୁବନ୍ତ ଘରମଜ୍ଝିମ ସାଳିଆସୁ
ଚାଅନ୍ତ ପୁଞ୍ଜିଅଚଣ୍ଡଂ ମିହୁଣାଇ ପେଛ୍ଛ । ୧୪ ।

ନେପଥ୍ୟ—

ବୈତାଳିକପ୍ପୋରେକଃ—ଜଅ ଜଅ ପୁବ୍ବଦସଂଗଣାଭୁଅଂଗ
ଚଂପାଚଂପଅ—କଣ୍ଣଉର ଲ୍ଲାଣିଛ୍ଛିହରାଢ଼ାଚଂଗଉଣ
ଵକ୍କମକ୍କନ୍ତ—କାମରୁଵ ହରକେଳୀବେଳାଆର ଅବମଣ୍ଣିଦ-
ଜଇସୁବଣ୍ଣବଣ୍ଣ ସବ୍ବଂଗସୁନ୍ଦରଉଣରମଣିଜ୍ଜ, ସୁହାଅ
ଦେ ହେଦୁ ସୁରହ୍ଣି ସମାରମ୍ଭୋ । ଇଧ ହ୍ଣି—
ଚଣ୍ଡୀଣଂ ଗଣ୍ଡବାଲୀପୁଲ ଅଣଚବଲ୍ଲ କଂଚବାଲ୍ଲବଲ୍ଲଣଂ
ମାଣଂ ଦୋଖଣ୍ଡଅନ୍ତା ରଇରହସଅର ଚ୍ଛେଲସୀମନ୍ତଣୀଣଂ ।
କାଣ୍ଣୋଢ଼ୀଣଂ କୁଣନ୍ତୋ କୁରଲଚରଲଣଂ କୁନ୍ତଲାଣଂ ପିଏସୁ
ଗୁଂଫନ୍ତା ଣେହଗଣ୍ଠି ମଲଅସିହରଣୋ ସୀଅଲାଏନ୍ତ ବାଆ । ୧୫

( ଅନେ୍ଵବ )

ହ୍ଵିଷ୍ଣପୂଃ —

ଜାଅଂ କୁଙ୍କୁମପଙ୍କଗଡମରତୀଗଣ୍ଡ ଚ୍ଚଚ୍ଚଂ ଚମ୍ପଅଂ
ଥୋଆବଞ୍ଚିଅଦୁଦ୍ଧମୁଦ୍ଧକୁସୁମା ସଂଫୁଲ୍ଲିଆ ମଲ୍ଲିଆ ।
ମୂଲେ ସାମଲମଲ୍ଲରଗ୍ଗଭସଲଂ ଲକ୍ଖିଜଏ କଂସୁଅଂ
ପିଜ୍ଜନ୍ତଂ ଭସଲେହ୍ଣି ଦୋସୁ ବ ଦସାଭ୍ଭଏସୁ ଲଗେଗେହ୍ଣବ । ୧୬

ରାଜା—ବ୍ବଭମଲେ ହେ ! ଏକୋ ଅହଂ ବଡ୍ଢାବଉ
ଭୁଜ୍ଝ, କା ଭୁମଂ ବଡ୍ଢ଼ାବଆ ମଜ୍ଝା କଂଉଣ ଦୁବେ ବ
ଅମ୍ହେ ବଡ୍ଢାବଦା କଂଚଣଚଣ୍ଡରକଣଚଣ୍ଡେହ୍ଣଂ ବନ୍ଧୀହ୍ଣଂ ?
ତା ବବ୍ଭମଚ୍ଚଅଛାବଅଂ ଚରଛୀଣଂ, ଣିଛାବଅଂ ମଲଅ-
ମାରୁଦନ୍ଦୋଳିଦଲଦାଣଇଣୀଣଂ, ସୁରୁଚ୍ଚବଞ୍ଚିଦ ପଞ୍ଚମଂ କଲ-

କଣ୍ଠି କଣ୍ଠେସୁ, କନ୍ଦଳିଦକନ୍ଦପ୍ପକୋଅଣ୍ଡ ଦଣ୍ଡାଖଣ୍ଡିଦକନ୍ଥଡ଼-
ଚନ୍ଦ୍ରମଂ, ସିଣିଦ୍ଧବନ୍ଧବଂ, ବସୁନ୍ଧରପୁରଂଧୀଏ ପସାହଦପସ-
ପ୍ପମାଣେହିଂ ଅଚ୍ଛୀହିଂ ମହୁସବଂ ଜଧିଚ୍ଛଂ ପେକ୍ଖଦୁ ଦେଵୀ ।

ଦେଵୀ —ଜଧା ଣିବେଦିଦଂ ବନ୍ଦୀହିଂ । ପଅଟ୍ଟା କ୍ଖେବ ମଲଆଣିଲା।

ତଧା ଅ—

ଲଂକାତୋରଣମାଳିଆତରଳିଣୋ କୁମ୍ଭୁବ୍ଭବସ୍ସାସମେ
ମନ୍ଦାନ୍ଦୋଳିଅଚନ୍ଦଣଦ୍ଦୁମଲଦା କପ୍ପୂର ସମ୍ପକ୍କିଣୋ ।
କଂକେଲ୍ଲୀକୁଲକଂପିଣୋ ଭଣିଲଦାଣିପ୍ପଚ୍ଛଣଚ୍ଛାବଆ
ଚଣ୍ଡଂ ଚମ୍ପିଦତମ୍ବପଣ୍ଣିସଲିଲା ବାଅନ୍ତି ବେଉଣିଲା । ୧୭

ଅବି ଅ—

ମାଣଂ ମୁଞ୍ଚଧ ଦେହ ବଲ୍ଲହଜଣେ ଦିଟ୍ଠିଂ ତରଙ୍ଗୁତ୍ତମମ୍
ତାରୁଣ୍ଣଂ ଦିଅହାଇ ପଞ୍ଚ ଦେହ ବା ପୀଣତ୍ଥଣୁତ୍ଥମ୍ଭଣମ୍ ।
ଇତ୍ଥଂ କୋଇଲମଞ୍ଜୁସିଞ୍ଜିଦମିସା ଦେବସ୍ସ ପଞ୍ଚେସୁଣୋ
ଦିଣ୍ଣା ଚେତ୍ତମହୁସବେଣ ସହସା ଆଣା ବ୍ବ ସଇବକଂଷା । ୧୮

ବିଦୂଷକଃ—ଭୋ ତୁମ୍ହାଣଂ ସବ୍ବାଣଂ ମଜ୍ଝେ ଅହଂ ଏକ୍କୋ
କାଲକ୍ଖରିଓ । ଜସ୍ସ ମେ ସସୁରସସ୍ସରେ ପରଦରେସୁ
ପୋତ୍ଥଅଭାରଂ ବହନ୍ତୋ ଆସୀ ।

ଚେଟୀ—(ବିହସ୍ୟ) ତଦୋ କମାଗଦଂ ତେ ପଣ୍ଡିଚ୍ଚମ୍ ।

ବିଦୂଷକଃ—(ସକ୍ରୋଧମ୍ ) ଆଃ ! ଦାସୀଏ ଧୂଦେ ! ଭବ୍ବସ୍ସକୁଟ୍ଟିଣି !
ଣିଲ୍ଲକ୍ଖଣେ ! ବଅକ୍ଖଣେ ! ଈଦିସୋହଂ ମୁକ୍ଖୋ ଜୋ
ତଏ ବି ଉବହସୀଅମି ? ଅଣ୍ଣଂ ଚ, ହେ ପରପୁଉବିଡାଲିଣି,

ଭମରକ୍ଠଣ୍ଠେ, ଟେଣ୍ଠାକବଲେ, ଭୁଣ୍ଟି ସଦଡ଼ ଦେ ! ଫରଂଫବା-
ଫଣ୍ଡିଛସ୍ସ ମହ୍ନ କଂ ଦୁଷଣଂ ଆସୀ । ଫେକ୍ଶ ଅକାଲଜଲଦ-
ବଂସସଭୂଦାଣଂ ଫରଂଫେବଏ ଫଣ୍ଡିଛଂ । ଅଥବା ହତ୍ଥେ
କଙ୍କଣଂ କଂ ଦପ୍ପଣେଣ ?

ବଚଷଣାଂ—(ବଭବ୍ୟ) ଏବଂ ଣେ ଦଂ, ଭୂରଙ୍ଗସସ ସିଗ୍ଘତ୍ତଣେ କଂ
ସକ୍ଖିଣୋ ପୁଚ୍ଛିଜନ୍ତି ? ତା ବଣ୍ଣଅ ବସନ୍ତଂ ।

ବଦୂଷକଃ—କଧଂ ପଞ୍ଜରଗ୍ଗଦା ସାର ବ୍ବ କୁରୁକୁବଅନ୍ତୀ
ଶତ୍ଠସି ? ଣ କଂ ପି ଜାଣାସି । ତା ପିଅବଅସ୍ସସ୍ସ ଦେବୀ
ପୁରଦୋ ପଢିସ୍ସଂ । ଜଦୋ ଣ କଡ୍ଥୁରଆ କୁଗ୍ଗାମେ
ବଣେ ବା ବକ୍କଣୀଅଦ୍ଧ, ଣେଦଂ ସୁବଣ୍ଣଂ କସବଟ୍ଟିଅଂ
ବଣା କସୀଅଦ୍ଧ ।

ରାଜା—ପିଅବଅସ୍ସ ! ତା ପଢ଼ । ସୁଣୀଅଦୁ ।

( ବଦୂଷକଃ ପଠତି ।)

ଫୁଲ୍ଲୁକ୍କରଂ କଲମକୂରସମଂ ବହନ୍ତି
ଜେ ସିନ୍ଧୁବାରବଡ଼ବା ମହ୍ନ ବଲ୍ଲହା ତେ ।
ଜେ ଗାଲ୍ଲିଅସ୍ସ ମହ୍ଵସୀ ଦହ୍ନଣୋ ସରଚ୍ଛା
ତେ କଂ ଚ ମୁଦ୍ଧଅଇଲ୍ଲ ପସୁଣପୁଞ୍ଜା । ୧୯

ବଚଷଣା—(ବହସ୍ୟ) ଣିଅକନ୍ତାରଓଣଜୋଗ୍ଗଂ ତେ ବଅଣଂ ।

ବଦୂ—କଂ ପି ଉଦାରବଅଣା ଭୁମଂ ପଢ଼ ।

ଦେବୀ—(କଣ୍ଠଭସ୍ମିତ୍ତା) ସହି ବଅକ୍ଖଣେ ! ଅମ୍ହାଣଂ ପୁରଦୋ
ଭୁବଂ ଗାଢକଇଉଣେଣ ଗବ୍ବୁଉଣା ହୋସି ! ତା ପଢ଼

ସଂପଦଂ ଅଜ୍ଜଉତ୍ତସ୍ସ ପୁରଦୋ ସଅଂ କଦଂ ଜ୍ଜଂ ପି କବ୍ବଂ
ଜଦୋ ତଂ କବ୍ବଂ ଜଂ ସଭାଏ ପଢ଼ିଅଦି, ତଂ ସୁବଣ୍ଣଂ
କସ୍ସବଟ୍ଟିଆଏ ଣିବ୍ବଡ଼ଦି, ସା ଘଞ୍ଜଣୀ ପଦଂ ରଂଜେଦି, ସୋ
ପୁତ୍ତୋ ଜୋ କୁଲଂ ଉଜ୍ଜଲେଦି ।

ବିଚକ୍ଷଣା—ଜଂ ଦେବୀ ଆଣବେଦି । (ଇତି ପଠତି ।)
ଜେ ଲଙ୍କାଗିରିମେହଲାହିଁ ଖଲିଦା ସମ୍ଭୋଆଖିଣ୍ଣୋରଈ—
ଫାରୁପ୍ଫୁଲ୍ଲଫଣାବଲୀକବଲଣେ ପତ୍ତା ଦରିଦ୍ଦତ୍ତଣଂ ।
ତେ ଏଣ୍ହିଂ ମଲଆଣିଲା ବିରହିଣୀଣୀସାସସଂପକ୍କିଣୋ
ଜାଦା ଝତ୍ତି ସିସୁତ୍ତଣେ ବି ବହଲା ତାରୁଣ୍ଣପୁଣ୍ଣା ବିଅ । ୨୦

ରାଜା—ସଚ୍ଚଂ ବିଅକ୍ଖଣା ଚଉରତ୍ତଣେ ଉତ୍ତୀଣ୍ଣା । ତା କିଂ ପି
ଅଣ୍ଣଂ ବଣ୍ଣୀଅଦାଏ । ଣକ୍ଖଣଂ ସୁକଇତ୍ତି । କଇଚୂଡ଼ାମଣିତ୍ତଣେ
ଠିଦା ଏସା ।

ବିଦୂ—(ସକ୍ରୋଧମ୍) ତା ଉଜ୍ଜୁଅଂ ଜ୍ଜେବ କିଂ ଣ ଭଣାଇ ଅଚ୍ଚୁତ୍ତମା
ବିଅକ୍ଖଣା କବ୍ବମ୍ମି, ଅହାଧମୋ କବ୍ବଂଜଣେ ବଂଭଣୋ ତ୍ତି ?

ବିଚକ୍ଷଣା—ଅଜ୍ଜ ! ମା କୁପ୍ପ । କବ୍ବ ଜ୍ଜେବ ଦେ କଇତ୍ତଣଂ
ପିସୁଣେଦି । ଜଦୋ ଣିଅକନ୍ତାରଉତ୍ତଣିଦଣିଚ୍ଚେ ବି ଅତ୍ଥେ
ସୁଉମାରା ଦେ ବାଣୀ ; ଲମ୍ବତ୍ଥଣୀଏ ବିଅ ଏକ୍କାବଲୀ
ଭୁଣ୍ଡିଲ୍ଲାଏ ବିଅ କଞ୍ଚୁଲିଆ, କାଣାଏ ବିଅ କଜ୍ଜଲସଲାଆ,
ଣ ସୁଟ୍ଠୁଦରଂ ଭାଦି ରମଣିଜ୍ଜା ।

ବିଦୂ—ତୁମ୍ବ ଉଣ ରମଣିଜ୍ଜେ ବି ଅତ୍ଥେ ଣ ସୁନ୍ଦରା ସଦ୍ଦାବଲୀ ।
କଅଣ କଡ଼ିସୁତ୍ତଏ ବିଅ ଜେଦ୍ଧକଙ୍କିଣୀମାଲା, ପଡ୍ଡପଟ୍ଟେ ବିଅ
ଟସରବିରଅଣା ଗୋରଙ୍ଗୀଏ ବିଅ ଚନ୍ଦଣଚଚ୍ଚା ଣ ଚୁରୁତ୍ତଣଂ
ଅବଲମ୍ବେଦି ।। ତଧା ବି ତୁମ୍ବ ବଣ୍ଣୀଅଦି ।

ବିଚକ୍ଷଣା—ଅଜ୍ଜ ! କା ତୁମ୍ହେହିଂ ସମଂ ଅମ୍ହାଣଂ ପଡ଼ିସିଦ୍ଧୀ ?
ଯଦୋ ତୁମଂ ଣାରାଓ ବିଅ ଣିରକ୍ଖରୋ ଵି ରଅଣତୁଲାଏ
ଣିଜୁଂଜୀଅସି । ଅହଂ ପୁଣ ତୁଲ ଵ୍ଵ ଲଦ୍ଧକ୍ଖରା ଵି ଣ
ସୁବର୍ଣ୍ଣତୋଲଣେ ଵିଣିଜୁଂଜୀଆମି ।

ବିଦୂ—ଏଵଂ ମହ ଭଣନ୍ତୀଏ ତୁହ ବାମଂ ଦକ୍ଖିଣଂ ଅ ଜହ୍ଣୁଟ୍ଠିଲ—
ଜେଟ୍ଠତୀଅରଣାମଧେଅଂ ଅଙ୍ଗଂ ତଡ଼ତ୍ତି ଉପ୍ପାଡ଼ଇସ୍ସଂ

ବିଚକ୍ଷଣା—ଅହଂ ପି ଉତ୍ତରଫଗ୍ଗୁଣୀପୁରସ୍ସରପୁଵ୍ଵକ୍ଖତ୍ତଣାମ୍-
ଧେଅଂ ଅଙ୍ଗଂ ତୁହ ତଡ଼ତ୍ତି ଖଣ୍ଡିସ୍ସଂ ।

ରାଜା—ଵଅସ୍ସ ! ମା ଏଵଂ ଭଣ । କଇତ୍ତଣେ ଠିଦା ଏସା ।

ବିଦୂ—( ସକ୍ରୋଧମ୍ ) ତା ଉଜ୍ଜୁଅଂ ଜ୍ଜେଵ କିଂ ଣ ଭଣାଇ,
ଅମ୍ହାଣଂ ଚେଡ଼ିଆ ହରିଅଡ଼ ଉଡ଼ଣନ୍ଦିଉଡ଼ପୋଟ୍ଟିସ ହାଲ-
ପ୍ପହୁଦୀଣଂ ଵି ପୁରଦୋ ସୁକଇ ତ୍ତି ?

ରାଜା—ଏଵଂ ଣେଦଂ ।

(ବିଦୂଷକଃ ସକ୍ରୋଧଂ ପରିକ୍ରାମତି ।)

ବିଚକ୍ଷଣା—( ବିହସ୍ୟ ) ତହିଂ ଗଚ୍ଛ ଜହିଂ ମେ ମାଦାଏ
ପଢ଼ମପାଡ଼ୋଲିଆ ଗଦା ।

ବିଦୂ—( ଵଳିତଗ୍ରୀଵମ୍ ) ତୁମଂ ଉଣ ତହିଂ ଗଚ୍ଛ ଜହିଂ ମେ
ମାଦାଏ ପଢମା ଦନ୍ତାଵଲୀ ଗଦା । ଈଦିସସ୍ସ ରାଉଲସ୍ସ
ଭଦ୍ଦଂ ଭୋଦୁ, ଜହିଂ ଚେଡ଼ିଆ ବମ୍ହଣେଣ ସମଂ ସମସୀସିଆଏ
ଦୀସଦି । ମଇରା ପଞ୍ଚଗଵ୍ଵଂ ଚ ଏକ୍କସ୍ସିଂ ଭଣ୍ଡେ କୀରନ୍ତି,
କଚଂ ମାଣିକ୍କଂ ଚ ସମଂ ଆହରଣେ ପଉଂଜୀଅଦି ।

ଚେଟୀ—ଇହ ରାଜଲେ ତଂ ତେ ନେଢୁ କଣ୍ଠଠିଦଂ ଣଂ ଭଃଆବଂ
ତନ୍ଲଅଣୋ ପୀପେ ସମ୍ମୁବ୍ବହନ୍ଦ । ତେଣଂ ଠି ଦେ ମୁହଂ
ଚୟଅଦୁ ନେଣ ଅପୋଃଟରୁ ଦୋହଲଂ ଲହନ୍ଦ ।

ବିଦୂ—ଆ, ଦାସୀଏ ଧୂର୍ତ୍ତି ! ଟେଣୋକରଲେ, କୋସଦ ଟଛଣି
ରଙ୍ଗଲେଛଣୀ ! ଏବଂ ମଂ ଭଣେସୀ ? ତା ମହ ମହାବଂଭ-
ଣସସ୍ ବଅନେଣ ତଂ ତୁମଂ ଲହ ଜଂ ଫଗ୍ଗୁଣେସମଏ
ପୋହଂଜଣୋ ଦୋହଲଂ ଲହେନ୍ଦ । ଜଂ ଚ ପାମରନ୍ନନ୍ତୋ
ଜଳାବଇଞ୍ଜୋ ଲହେନ୍ଦ ।

ବିଚକ୍ଷଣା—ଅହଂ ପୁଣ ଭୁହ ଏବଂ ଭଣନ୍ତସ୍ସ ବେଉରସ୍ସ ବଅ
ପାଅଲଗ୍ଗସ୍ସ ପାଏଣ ମୁହଂ ଚୂରଇସ୍ସଂ । ଅଣଂ ଚ,
ଭଓରସାଡ଼ାଚୂରସ୍ସରଣିକ୍ଖଓଣାମଧେଅଂ ଅଙ୍ଗଜୁଅଲଂ
ଉପ୍ପାଡ଼ଅ ଘଲ୍ଲିସ୍ସଂ ।

(ବିଦୂଷକଃ ସନ୍ତୋଷଂ ପରିକ୍ରାମତି ।)

ବିଦୂ—(ଯବନିକାନ୍ତରେ କର୍ଣ୍ଣଂ ଦତ୍ତ୍ୱା) ଈଦସଂ ରାଉଲଂ ଦୂରେଣ
ବନ୍ଦୀଅଦ ଜନ୍ନଂ ଦାସୀ ବଂଭଣେଣ ସମଂ ପାଡ଼ିସିଦ୍ଧିଂ କରେଦ ।
ତା ଆଚ୍ଛଉ ପହୁଦ ଣିଅବସନ୍ଦରବଂଭଣୀଏ ଚଲଣେସୁ ସ୍ସଓ
ଭବିଅ ଗେହେ ଜେବ ଚିଟ୍ଠିସ୍ସଂ ।

(ସର୍ବେ ହସନ୍ତି ।)

ଦେବୀ—କାଦମ୍ବରୀ ଅବବଣ୍ଣଜେଣ ବଣା ବୋଟ୍ଠୀ, କାଦମ୍ବରୀ ଉଚ୍ଛଣେ
ଣଅଣଞ୍ଜଣେଣ ବଣା ପସାହଣାଲଚ୍ଛୀ ।

(ନେପଥ୍ୟେ)

ଣ ହୁ ଣ ହୁ ଆଗମିସ୍‌ସଂ । ଅଚ୍ଚୟା କୋ ବ ପିଅବଅ-
ସେସା ଅପ୍ପେଣ୍ଡସୀଅଦୁ । ଅହବା ଏସା ଦୁଟ୍‌ଠଦାସୀ ଲମ୍ବକୁଚଂ
ଟପ୍‌ପରକଣ୍ଠଂ ପଢ଼ଯୀସଅଂ ଦେଇଅ ମହ ଟ୍‌ଠାଣେ
ଉବଦ୍ଧସଣତ୍ଥଂ ଙ୍କାରଦୁ । ଅହଂ ଏକୋ ମୁଦୋ ତୁମ୍‌ହାଣଂ
ସବ୍‌ବାଣଂ ମଜ୍‌ଝମି । ତୁମ୍‌ହେ ଉଣ ବଚ୍ଛସଅଂ ଜୀବଧ ।

ବିଚକ୍ଷଣା—ମା ଅଣୁସଂଧେଧ । ଅଣୁଣଅକକ୍‌ସୋ କ୍ଖୁ କବଞ୍ଚଲେ
ବଂଭଣୋ ସଳଲସିଂଦ୍ଧେ ବଅ ସଣଗୁଣସେଣ୍ଣୀ ଦିଢ଼ ଗାଢ଼ଦବେ
ବୋଦ୍ଧ । ଣଂ ଦଂସଣୀଅଂ ଘାସଦୁ ।

ଦେବୀ—[ସମନ୍ତା ଦବଲୋକ୍ୟ]

ଗାଅନ୍ତ ଗୋବଅ ବଦ୍ଧୂ ପଅ ପେଂଖିତାସୁ
ଦେଳାସୁ ବବ୍‌ଭମବଗାସୁ ଣିବଟ୍‌ଠଟ୍‌ଠୀ ।
ଜଂ ଜାଦ ଖଂକଦ ତୁରଙ୍ଗ ରହୋ ଦ୍ଦଣସୋ
ନେଣ ବ୍‌ବ ଦ୍ଦୋନ୍ତ ଦଅହା ଅଇଘାଦ ଘାହା । ୨୧ ।
[ପ୍ରବଣ୍ୟା ପଟୀକ୍ଷେପେଣ]

ବିଦୂ—ଆସଣଂ ଆସଣଂ

ରାଜା—କଂ ତେଣ ?

ବିଦୂ—ଭଳବୋବାଣନ୍ଦା ଦୁଆରେ ଚଟ୍‌ଠଦି ।

ଦେବ—କଂ ସୋ, କୋ ଜଣାବଅଣାନ୍ଦୋ ଅଚ୍ଛବ୍‌ଭୁଦମ୍ଭୀ
ସୁଣୀଅଦି ?

ବିଦୂ—ଅଧ ଇଂ

ରଜା—ପଟବେଣଅ ।

(ଟଦୂଷବେ ନଷ୍କ୍ରମ୍ୟ ଚେଟନୈବ ସହ ପ୍ରବଶତି । )

ଭୈରବାନନ୍ଦଃ—[କଞ୍ଚନ୍ ମଦମଭିନୀୟ]

ମନ୍ତୋଣ ତନ୍ତୋଣ ଅ କିଂ ପି ଜାଣେ
ଝାଣଂ ଚ ଣୋ କିଂ ପି ଗୁରୁପ୍ପସାଦା ।
ମଜ୍ଜଂ ପିବାମୋ ମହିଳଂ ରମାମୋ
ମୋକ୍ଖଂ ଚ ଜାମୋ କୁଲମଗ୍ଗଲଗ୍ଗା ॥ ୨୨ ॥

ଅବ ଅ—

ରଣ୍ଡା ଚଣ୍ଡା ଦିକ୍ଖିଦା ଧମ୍ମଦାରା
ମଜ୍ଜଂ ମଂସଂ ପିଜ୍ଜଏ ଖଜ୍ଜଏ ଅ ।
ଭିକ୍ଖା ଭୋଜ୍ଜଂ ଚମ୍ମ ଖଣ୍ଡଂ ଚ ସେଜ୍ଜା
କୋଲୋ ଧମ୍ମୋ କସ୍ସ ଣୋ ଭାଦି ରମ୍ମୋ ॥ ୨୩ ॥

କିଂ ଚ—

ମୁତ୍ତିଂ ଭଣନ୍ତି ହରିବମ୍ହମୁହା ବି ଦେବା
ଝାଣେଣ ବେଅ ପଢଣେଣ କଦୁକ୍କିଆହିଂ
ଏକ୍କେଣ କେବଲ ଉମାଦଇଦେଣ ଦିଟ୍ଠୋ
ମୋକ୍ଖୋ ସମଂ ସୁରଅ କେଳି ସୁରାରସେହିଂ ॥ ୨୪ ॥

ରଜା—ଇଦଂ ଆସଣଂ । ଉବବିସଦୁ ଭଇରବାଣନ୍ଦୋ ।

ଭୈରବ—[ଉପବିଶ୍ୟ] କିଂ କାଦବ୍ବଂ ?

ରଜା—କହ୍ନିଂ ପି ବସଏ ଅଚ୍ଛରିଅଂ ଦଟ୍ଠୁଂ ଇଚ୍ଛାମି ।

ଭୈର—ଦଂସେମି ତଂ ପି ସସିଂ ବସୁହ୍ମାବଇଣ୍ଣଂ
ଅପ୍ଫେମି ତସ୍ସ ବ ରମ୍ମସ୍ଣ ରହ ହଛେ
ଆମେ ଜକ୍ଖସ୍ସ ର ସିଦ୍ଧଗଂ ଗଣାଓ
ତଂ ଣତ୍ଥି ଭୂମିବଲଏ ମହ ଜଂ ସଜ୍ଝ ॥ ୨୫ ॥
ତା ଭଣ କଂ କଞ୍ଚୁ ।

ରଜା—[ବିଦୂଷକଂ ବିଲୋକ୍ୟ] ବଅସ୍ସ ! ଭଣ କ ପି ଅଜ୍ଜବ୍ବଂ
ହଟ୍ଠଂ ମହ୍ଜାରଅଣଂ ।
ବିଦୂ—ହଟ୍ଠଂ ଧାବ ।
ରଜା—କହେହି ।

ବିଦୂ—ଅତ୍ଥି ଏତ୍ଥ ଦକ୍ଖିଣାବହେ ବଚ୍ଛୋମଂଣାମ ଣଅରଂ ।
ତହିଂ ମଏ ଏକ୍କଂ କଣ୍ଣାଅଣଂ ହଟ୍ଠଂ । ତଂ ଇହ
ଆଣୀଅଦୁ ।
ଭୈରବ—ଆଣୀଅଦି ।

ରଜା—ଅବଦାରଜ୍ଜଦୁ ପୁଣ୍ଣିମା ହରିଣଙ୍କୋ ଧରଣୀଅଲମ୍ମି ।
[ଭୈରବାନନ୍ଦୋ ଧ୍ୟାନଂ ନାଟୟତି]
[ ତତଃ ପ୍ରବିଶତି ପଟାକ୍ଷେପେଣ ନାୟିକା । ସର୍ବେ ଆଲୋକୟନ୍ତି ।]
ରଜା—ଅହହ, ଅଚ୍ଛରିଅଂ ଅଚ୍ଛରିଅଂ,—
ଜଂ ଧୋଅଂଜଣସୋଣଲୋଅଣଜୁଅଂ ଲଗ୍ଗାଲଅଗ୍ଗଂ ମୁହଂ
ହତ୍ଥାଲମ୍ବିଦକେଶପଲ୍ଲବଚଏ ଦୋଲନ୍ତି ଜଂ ବିନ୍ଦୁଣୋ ।
ଜଂ ଏକ୍କଂ ସିଚଅଞ୍ଚଲଂ ଣିବସିଦଂ ତଂ ଣ୍ହାଣ
କେଲିଟ୍ଠିଦା ଆଣୀଦା ଇଅମବ୍ଭୁଦେକ ଜଣଣୀ ଜୋଇ
ସରେଣାମୁଣା ॥ ୨୬ ॥

ଅବ ଅ—

ଏକ୍‌କେଣ ପାଣିଣଳିନେଣ ଣିବେସଈନ୍ତୀ ।
ବନ୍ଧଅଞ୍ଚଲଂ ଘଣଥଣଡ୍‌ଲସଂ ସମାଣେଂ ।
ଚଣ୍ଡେ ଲିହଜ୍ଜହ ଣ କସସ ବ ସଞ୍ଜମନ୍ତୀ
ଅଣେ୍‌ଣନ୍‌ ଚଂକମଣେହୋ ଚଲହଂ କଡ୍ଡଲ୍ଲଂ । ୨୭ ॥

ବଦୂ—ଣ୍‌ହାଣାବମ୍ଭକ୍‌କାହରଣ୍ଣ ଚଂଆଏ ଚରଙ୍ଗଭଙ୍ଗକ୍ଖଦମଣ୍ଡଣାଏ ।
ଓଲ୍ଲଂସୁଉଲ୍ଲାସିଣୁଲ୍ଲଆଏ ସୁଁନ୍ଦରସବ୍‌ବସ୍‌ସ ମିମୀଅ
ବହୋି ॥ ୨୭ ॥

ନାୟିକା—[ସବାନବଲୋକ୍ୟ ସ୍ୱଗତମ୍] ଏସୋ ମହାରାଓ କୋ ବ
ଇମିଣା ଗମ୍ଭୀର ମହୁରେଣ ସୋହାସମୂହାଏଣ ଜାଣୀଅହ ।
ଏସା ବ ଏଦସ୍‌ସ ମହାଦେବୀ ଲକଖୀ ଅହ । ଅଢଣାସ
ସରସ୍‌ସ ବାମଢେ ଵଅ ଅକହୁଆ ବ ଗୋସ ମୁଣୀକ୍କଦା ।
ଏସୋ କୋ ବ ଜୋକ୍କସନେସ । ଏସ ଉଣ ପରିଅଣ୍ଡୋ
(ବଚନ୍ତ୍ୟ) ତା କଂ ଭ ଏଦସ୍‌ସ ମହାଲସହ୍ଵଦସ୍‌ସ ଵ ବହୋି
ମଂ ବହୁ ମଣ୍ଣେହ । (ଇତ ବ୍ୟସ୍ତଂ ଖକ୍ଷତେ ।)

ରଜା—(ବଦୂଷକମଚବାର୍ଯ୍ୟ)

ଜଂ ମୁକକା ସବଣନ୍ତରେଣ ସହସା ଭକ୍‌ଖା କଲ୍ଲକ୍ଖକ୍କଡ଼ା
ଭଙ୍ଗାହ୍ଵଲ୍ଲିଳିଦକେଦଅଟଗିମହଲଦୋଣୀ ସରିଚ୍ଛକ୍କଣା
ତଂ କପ୍ପୁରରସେଣ ଣଂ ଧବଲ୍ଲିଦୋ ଜୋଣ୍‌ହୋଇ ଣଂ
ଣ୍‌ହାବଦୋ ମୁତ୍ତାଣଂ ଘଣଚରେଣ୍ଣେବ୍‌ବ ଛୁଦୋ ଜାହୋ
ମ୍‌ହ ଏଚ୍‌ଥନ୍ତରେ ॥ ୨୯ ।

ବଦୂ — ଅହ୍ୱୋ ସେ ରୂବସୋହ୍ୱା ।

ମଣେଣେ ମଜ୍‌ଝ ଭିବଲବଲାଅଂ ଭମ୍ୱମୁଝ୍‌ଠିଅ ଗେଜ୍‌ଝଂ
ଣୋ କାହୁହ୍ୱଂ ରମଣଫଲଅଂ ବେଝ୍‌ଠିଦୁଂ ଜାଦ ଦୋହ୍ୱଂ ।
ଣେଓ୍ୱଣ୍ଟେଓ୍ୱଂ ତରୁଣି ପସଣ୍ଡ ଦଜ୍ଝ ମାଣୋବମାଣଂ
ତା ପଚ୍ଚକ୍‌ଖଂ ମହ ବଳାହ୍ୱଦୁଂ ଜାଣ ଏସା ଣ ଚଓ୍ୱେ ।। ୩୦ ।।
କଧଂ ଣ୍‌ହାଣଧୋଦବଲେବଣା ବ ସମ୍ମୂଢରତ୍ତବଭୂସଣା
ବ ରମଣିଜ୍ଜା । ଅହ ବା—

ରୂବେଣ ମୁକ୍‌କା ବ ବଣ୍ଣସଅନ୍ତ ଭାଣଂ ଅଲଙ୍କାରବସେଣ
ସୋହ୍ୱା । ଣିସଗ୍‌ଗଚଙ୍ଗସ୍‌ସ ବ ମାଣୁସସ୍‌ସ ସୋହ୍ୱା ସମନ୍ମୀଲଦ
ଭୂସଣେହ୍ୱଂ ।। ୩୧ ।।

ରାଜା—ଏଦାଏ ଦାବ ଏଦଂ—

·ଲ୍ଲବଣ୍‌ଣଂ ଣବଜଚ୍ଚକଞ୍ଚଣଣିହଂ ଣେଓ୍ୱାଣ ଦୀହତ୍ତଣଂ
କଣଣେହ୍ୱଂ ଖଳାଦଂ କବୋଲଫଲଆ ଦୋଖଣ୍ଡଚନ୍ଦୋବମା
ଏସା ପଞ୍ଚସରେଣ ସଦ୍ଧଦଧଣୂଦଣ୍ଡେଣ ରକ୍‌ଖିଜଏ
ଜେଣଂ ସୋସଣମୋହଣପ୍ପହୁଦବେଦ୍ଧନ୍ତ ମଂ ମଗ୍‌ଗଣେ ।।୩୨

ବଦୂ—(ବହସ୍ୟ) ଜାଣେ ରଭ୍ଥାଏ ଲ୍ଲେଝଦ ସେ ସୋହ୍ୱାରଣଂ ।

ରାଜା—(ବହସ୍ୟ) ପିଅବଅସ୍‌ସ ! କଧେମି ଦେ ।

ଅଙ୍ଗଂ ଚଙ୍ଗଂ ଣିଅଗୁଣଗଣ । ଲଙ୍କିଦଂ କାମିଣୀଣଂ
ପଚ୍ଛାଅନ୍ତୀ ଉଣ ତଣୁସିରଂ ଭାଦ ଣେବଚ୍ଛଲଚ୍ଛୀ ।
ଛତ୍ତଥଂ ଜାଣଂ ଅବଅବଦୋ କା ବ ସୁନ୍ଦେରମୂଦା
ମଣେ୍‌ଣତାଣଂ ବଲଇଦଧଣୂ ଣିଚ୍ଚଭଞ୍ଚୋ ଅଣଙ୍ଗେ ।। ୩୩ ।।

ଅବ ଅ, ଏଦାଏ—

ତହ୍ଵା ତମଣେବତ୍ଥରେ ଜହ ଣ ଠାଇ ବଞ୍ଚୀଲଦା
ତହ୍ଵା ସିହ୍ଵଣଭୁଙ୍ଗିମା ଜହ ଣିଏଇ ଣାହ୍ଵଂଣ ହ୍ଣ । .
ତହ୍ଵା ଣଅଣେବଡ୍ଢିମା ଜହ ଣ କଂ ପି କଣ୍ଣେଚ୍ପଲଂ
ତହ୍ଵା ଅ ମୁହମୁହ୍ଳଲଂ ଦୁସସିଣୀ ଜହ୍ଵା ପୁଣ୍ଣିମା ।। ୩୪ ।।

ଦେଵୀ—ଅଜ୍ଜ କବଞ୍ଜଲ ! ପୁଚ୍ଛିଅ ଜାଣ କା ଏସ ତ୍ତି ।

ଵଦୂ—(ତାଂ ପ୍ରତି) ଏହ୍ଵ ମୁହମୁହ୍ଵ । ଉ଼ବବସିଅ ଣିବେଦେହ୍ଵ କା ତୁମଂ ତି ।

ରାଜା—ଆସଣଂ ଇମୀଏ ।

ଵଦୂ—ଏଦଂ ମେ ଉତ୍ତରୀଅଂ ଆସଣଂ ।
(ଵଦୂଷକ ନାୟିକେ ବସ୍ତ୍ରଦାନୋପବେଶନେ ନାଟୟତଃ)

ଵଦୂ—ଭୋଦ ! ସଂପଦଂ ଵହ୍ଵକ୍ଷଦୁ ।

ନାୟିକା—ଅତ୍ଥି ଏତ୍ଥ ଦକ୍ଖିଣାବଧେ କୁନ୍ତଲେସୁଂ ସଅଲଜଣ-ବଲ୍ଲହୋ ବଲ୍ଲହରାଓ ଣାମ ରାଆ ।

ଦେଵୀ—(ସ୍ଵଗତମ୍) ଜୋ ମହ ମାଉସୀଆଏ ପଣ୍ଣ ହୋଦ୍ ।

ନାୟିକା—ତସ୍ସ ଘରଣୀ ସସିପ୍ପହା ଣାମ ।

ଦେଵୀ—(ସ୍ଵଗତମ୍) ସା ଵ ମେ ମାଉଚ୍ଛିଆ ।

ନାୟିକା—(ସହସ୍ୟ) ତେହ୍ଵଂ ଅହଂ ଖଲଖଣ୍ଡେହ୍ଵଂ ଜାଣିଦା ଦୁହ୍ଵଦ୍ ତ୍ତି ବୁଚାମି ।

ଦେଵୀ—(ସ୍ୱଗତମ୍) ଣ ହୁ ସସିପ୍ପହାଗବ୍ଭୂପ୍ପତ୍ତିଂ ଅନ୍ତରେଣ ଈଦିସୀ' ରୁଵସୋହା । ଣ ହୁ ବଦୂରଭୂମିଂ ଅନ୍ତରେଣ ବେରୁଲଅ ମଣିସଲାଆ ଣିପ୍ପତ୍ତି । (ପ୍ରକାଶମ୍) ଣଂ ଭୂଵଂ କପ୍ପୂର ମଞ୍ଜରୀ ?

( ନାୟିକା ସଲ୍ଲଜମଧୋମୁଖୀ ତିଷ୍ଠତି । )

ଦେଵୀ—ଏହି ବହିଣିଏ ! ଆଲିଙ୍ଗସ୍ସ ମଂ । (ଇତିପରା ଷ୍ଟଜେତେ)

କପୂର ମଞ୍ଜରୀ— ଅମ୍ମହେ, କପ୍ପୂରମଞ୍ଜରୀଏ ଏସୋ ପଢ଼ମୋ ପଣାମୋ ।

ଦେଵୀ—ଅଜ୍ଜ ଭଇରବାଣନ୍ଦ ! ଭୁଜ୍ଜଂ ପ୍ପସାଏଣ ଅପୁବ୍ଵଂ ଫହହାଣଅଂ ଅଣୁଭଵଦଂ କପ୍ପୂରମଞ୍ଜରୀ ଦଂସଣେଣ । ତା ଚିଟ୍ଠଦୁ ଵାଦ ଏସା ପଞ୍ଚଦସଦିଵସାଇଂ । ପଚ୍ଛା ଝାଣଵିମାଣେଣ ଣଇସ୍ସଧ ।

ଭୈରବ—ଜଂ ଭଣାଦି ଦେଵୀ ।

ବିଦୂ—(ରାଜାନମୁଦ୍ଦିଶ୍ୟ) ଭୋ ବଅସ୍ସ ! ଅମ୍ହେ ପରଂ ଦୁଵେ ବ ବାହିରା ଭୂଵଂ ଅହଂ ଚ । ଜଦୋ ଏଦାଣଂ ମିଳଦଂ କୁଡ଼ମ୍ବଂ ବଟ୍ଟଦି । ଜଦୋ ଇମୀଓ ଦୋ ବ ଭହିଣିଆଓ । ଭଇରବାଣନ୍ଦୋ ଉଣ ଏଦାଣଂ ସଂଜୋଅଅରୋ ଅଡିଦୋ ମହାଗୁଣେଦୋଅ । ଏସା ଵିଅକ୍ଖଣା ମହାଅଲସରସ୍ସଦୀ ଅ କୁଟ୍ଟିଣୀ ଦେଵୀ ହେବ ଦେହନ୍ତରେଣ ।

ଦେଵୀ—ଵିଅକ୍ଖଣେ ! ଣିଅଜେଟ୍ଠବହିଣିଅଂ ସୁଲକ୍ଖଣଂ ଭଣିଅ ଭଇରବାଣନ୍ଦସ୍ସ ହୁଅଇଚ୍ଛିଦା ସପଜ୍ଜା କାଦବ୍ଵା ।

ଵିଚକ୍ଷଣା—ଜଂ ଦେଵୀ ଆଣବେଦି ।

ଦେବୀ—(ରାଜାନଂ ପ୍ରତି) ଅଜ୍ଜଉତ୍ତ ! ପେସିହ୍ମ ମଂ, ଜେଣ ଅହ୍ମଂ ବହ୍ମଣୀଏ ଏଦାବତ୍ଥାଏ ଣେବଚ୍ଛଲଚ୍ଛୀଣ୍ଣିଲ୍ଲଣି ମିତ୍ତଂ ଅନ୍ତେଉରଂ ଗମିସ୍‌ସଂ ।

ରାଜା—ଜୁଚ୍ଛନ୍ଦ ଚଂପଅଲଦାଏ କତ୍ଥୁରିଆ କପ୍‌ପୂରରସେହ୍ମଂ ଆଲ-ବାଲ ପରିପୂରଣଂ ।

( ନେପଥ୍ୟେ )

ବୈତାଳିକୟୋରେକଃ—ସୁହସଂଝା ହୋଦୁ ଦେବସ୍‌ସ ।
ଏଦଂ ବାସର ଜୀବପିଣ୍ଡସରିସଂ ଚଣ୍ଡସୁଣୋ ମଣ୍ଡଲଂ
କୋ ଜାଣାଦି କହ୍ମିଂ ପି ସଂପଦି ଗଅଂ ପଉତ୍ତମ୍ମି କାଲନ୍ତରେ ।
ଜାଦା କିଂ ଚ ଇଅଂ ପି ଧାହବରହ୍ମା ସୋଉଣ ଣାହେ ଗଦେ
ଣିଦ୍ଧାମୁଦ୍ଧିଦଲୋଅଣଂ ବ୍‌ବ ଣଳିଣି ମୀଲନ୍ତ ପଙ୍କେ ରୁହା ।୩୫।

ଦ୍ୱିତୀୟଃ—

ଉଦ୍‌ଘାଡ଼ନ୍ତନ୍ତ ଲ୍ଲାମଣିଅମ ବଲହୀଟେଉଭଉଣିବେସା
ପଲ୍ଲଙ୍କା କିଂ କହ୍ମିଂ ଉଦୁସମଅସୁହା ପତ୍ଥରିଜ୍ଜନ୍ତୁ ଝତ୍ତି ।
ସେରନ୍ଧୀଲ୍ଲୋଲହତ୍ଥଙ୍ଗୁଳି ଚଲଣବେସା ପଞ୍ଚସଦ୍ଦୋ ପଅଟ୍ଟୋ
ହୁଙ୍କାରେ ମଣ୍ଡବେସୁଂ ବଲସଦି ମହୁରେ ରୁଣ୍‌ଠରୁଣ୍‌ଠଙ୍ଗଣାଣଂ
।୩୬

ରାଜା—ଅମ୍‌ହେ ବି ସଂଝଂ ବନ୍ଦିଦୁଂ ଗମିସ୍‌ସାମୋ ।

[ ଇତି ନିଷ୍କ୍ରାନ୍ତ ସବେ । ]

ଇତି ପ୍ରଥମଂ ଜବନିକାନ୍ତରମ୍

———

ନିମ୍ନଲିଖିତ ପ୍ରବନ୍ଧ ଓ ପୁସ୍ତକଗୁଡ଼ିକ ପଠନୀୟ ।

୧—କର୍ପୂରମଞ୍ଜରୀର କେତେକ ତଦ୍‌ଭବ ଓ ଦେଶଜ ଶବ୍ଦର ଅନୁଶୀଳନ ।
( ଦିଲ୍ଲୀଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ପ୍ରାଚ୍ୟ ସମ୍ମିଳନୀରେ ଆଲୋଚିତ ପ୍ରବନ୍ଧ ) ।

ଲେଖକ—ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ।

୨—କର୍ପୂରମଞ୍ଜରୀ । ( ସମ୍ପାଦକ—Sten Conow) ହାର୍ଭାର୍ଡ଼ ୟୁନିଭରସିଟି ଦ୍ୱାରା ପ୍ରକାଶିତ ।

୩—କର୍ପୂରମଞ୍ଜରୀ (ଡକ୍ଟର ମନମୋହନ ଘୋଷଙ୍କ ଦ୍ୱାରା ସମ୍ପାଦିତ)

୪—କାବ୍ୟମୀମାଂସା ( ସଂପାଦକ— ଶ୍ରୀ ନଗେନ୍ଦ୍ରନାଥ ଚକ୍ରବର୍ତ୍ତୀ ଏମ୍, ଏ. ଶାନ୍ତିନିକେତନରୁ ପ୍ରକାଶିତ । )

୫—ରାଜଶେଖରଙ୍କର ଜୀବନୀ ଗ୍ରନ୍ଥାବଳୀ । [ ଭି. ଏସ୍. ଆପ୍ଟେଙ୍କ ଦ୍ୱାରା ସଂପାଦିତ ଓ ପୁନାରୁ ପ୍ରକାଶିତ । ]